ଆମ ଦେଶର

# ଓଡ଼ିଆ ରାଜା



ଓଡ଼ିଆ ରାଜାଙ୍କ କୀର୍ତ୍ତି

କଟକ ଟ୍ରେଡ଼ିଂ କମ୍ପାନୀ
ବାଲୁବଜାର, କଟକ -୨

# ଆମ ଦେଶର ଓଡ଼ିଆ ରାଜା

ଲେଖକ—

୰ ଶିବପ୍ରସାଦ ଦାଶ, ଏମ୍. ଏଡ୍.

ନୂତନ ସଂସ୍କରଣ
୧୯୮୯

ପ୍ରକାଶକ

କଟକ ଟ୍ରେଡ଼ିଂ କମ୍ପାନୀ

ବାଲୁବଜାର, କଟକ-୨

ମୂଲ୍ୟ—ଷ୍ଵରଟଙ୍କା ମାତ୍ର

# ସୂଚୀପତ୍ର

ବିଷୟ | ପୃଷ୍ଠା





# ଖାରବେଳ

## ( ୧ )

ପୂର୍ବକାଳରେ ବିଦର୍ଭ ଏକ ବିଶାଳ ଦେଶ ଥିଲା । ଏହା ବିନ୍ଧ୍ୟ ପର୍ବତଠାରୁ ଆମ ଓଡ଼ିଶାର ବୌଦ୍ଧ-ଫୁଲବାଣୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ସେଠାରେ ଶିଶୁପାଳ ଚେଦୀ ରାଜତ୍ୱ କରୁଥିଲେ । ଶିଶୁପାଳ ଭାରତର ଚକ୍ରବର୍ତ୍ତୀ ହେବେ ବୋଲି ଯୁଧିଷ୍ଠିରଙ୍କ ସଙ୍ଗେ ଯୁଦ୍ଧ କରିଥିଲେ ।

ଅନେକ କାଳ ପରେ ବିଦର୍ଭ ତିନିଖଣ୍ଡ ହୋଇ ଯାଇଥିଲା । ଏହାର ପଶ୍ଚିମ ଖଣ୍ଡର ନାମ ହେଲା ମହାରାଷ୍ଟ୍ର । ପୂର୍ବ ଖଣ୍ଡର ନାମ ହେଲା ମହାକୋଶଳ । ଦକ୍ଷିଣ ଖଣ୍ଡର ନାମ ହେଲା ମହାକାନ୍ତାର ।

ମହାକୋଶଳକୁ ସଂକ୍ଷେପରେ 'କୋଶଳ' ବା 'କୋଶଳା' ବୋଲି ମଧ୍ୟ କହୁଥିଲେ । ବାୟୁପୁରାଣରେ ଗୋଟିଏ ଶ୍ଳୋକ ଅଛି:—

କୋଶଳାୟାଂ ତୁ ରାଜାନୋ ଭବିଷ୍ୟନ୍ତି ମହାବଳାଃ ।
'ମେଘା' ଇତି ସମାଖ୍ୟାତା ବୁଦ୍ଧିମନ୍ତଃ ନବୈବ ତୁ ।

"କୋଶଳରେ ମେଘ ବଂଶର ନଅ ଜଣ ବୁଦ୍ଧିମାନ ଓ ବଳବାନ୍ ରାଜା ରାଜତ୍ୱ କରିବେ ।"

ଏଥିରୁ ଜଣାଯାଏ ଯେ, କୋଶଳରେ 'ମେଘ' ନାମରେ ଏକ ବଂଶ ରାଜତ୍ୱ କରୁଥିଲେ । ଆଜିକାଲିର ରାୟପୁର, ବିଳାସପୁର, ସମ୍ବଲପୁର, ସୁନ୍ଦରଗଡ଼, ପାଟଣା ଓ ବୌଦ୍ଧ-ଫୁଲବାଣୀ ଜିଲ୍ଲାମାନଙ୍କୁ ନେଇ ଏହି କୋଶଳ ରାଜ୍ୟ ଗଠିତ ହୋଇଥିଲା ।

କୋଶଳର ଦକ୍ଷିଣରେ କଳିଙ୍ଗ ରାଜ୍ୟ ଥିଲା । କଳିଙ୍ଗରେ 'ମେଘବାହନ' ବୋଲି ଏକ ରାଜବଂଶ ରାଜତ୍ୱ କରୁଥିଲେ । ଖାରବେଳ ମେଘବାହନ ବଂଶର ଶ୍ରେଷ୍ଠ ରାଜା ଥିଲେ ।

ଜଣାଯାଉଛି, ମେଘବଂଶ ଓ ମେଘବାହନ ବଂଶ ଗୋଟିଏ ବଂଶରୁ ଜାତ ହୋଇଥିଲେ । କାରଣ, ଯେତେବେଳେ ଅଶୋକ ମୌର୍ଯ୍ୟ କଳିଙ୍ଗ ଜୟ କଲେ, ମେଘବାହନ ବଂଶର କଳିଙ୍ଗ ରାଜା କୋଶଳକୁ ପଳାଇ ଆସି ଆଶ୍ରୟ ନେଇଥିଲେ ।

ଖାରବେଳଙ୍କ ବଂଶକୁ ଚେତ ବଂଶ ବୋଲି ମଧ କହନ୍ତି । ଶିଶୁପାଳଙ୍କ ବଂଶକୁ ଚେଦୀ ବଂଶ କହନ୍ତି । ମେଘ ବଂଶ ଓ ମେଘବାହନ ବଂଶ ଚେଦୀ ବଂଶରୁ ଜାତ ହୋଇଥିବା ଅନୁମାନ କରାଯାଏ ।

ଅଶୋକ କଳିଙ୍ଗର ଚେତ ବଂଶକୁ ଯୁଦ୍ଧରେ ହରାଇ ସେମାନଙ୍କ ହାତରୁ କଳିଙ୍ଗ ଛଡ଼ାଇ ନେଇଥିଲେ । ଅଶୋକଙ୍କ ମୃତ୍ୟୁ ପରେ ଚେତ ବଂଶର ରାଜା କୋଶଳରୁ ପୁଣି କଳିଙ୍ଗକୁ ଗଲେ ଏବଂ ନିଜ ସ୍ୱାଧୀନତା ଘୋଷଣା କଲେ ।

ଚେତ ବଂଶର ରାଜଧାନୀ ଥିଲା ଭୁବନେଶ୍ୱର ନିକଟରେ ତୋଷାଳୀ । ଏହି ତୋଷାଳୀରେ ଖ୍ରୀଷ୍ଟପୂର୍ବ ପ୍ରାୟ ୨୩୦ରେ ଜନ୍ମ ହୋଇଥିଲେ, ଚେତ ମହାମେଘବାହନ ଖାରବେଳ । ଖାରବେଳଙ୍କ ପିତା ତୋଷାଳୀର ରାଜା ଥିଲେ ।

ଖାରବେଳ ପନ୍ଦର ବର୍ଷ ବୟସରେ ବାଲ୍ୟଶିକ୍ଷା ଶେଷ କରିଥିଲେ । ସେତେବେଳକୁ ସେ କୁସ୍ତି କସରତ, ଅସ୍ତ୍ରଚାଳନା ଓ ଅଶ୍ୱାରୋହଣ ଭଲରୂପେ ଜାଣିଥିଲେ । ପୁଅକୁ ଉପଯୁକ୍ତ ଦେଖି ତାଙ୍କ ପିତା ତାଙ୍କୁ ଯୁବରାଜ ପଦରେ ରଖିଲେ । ଯୁବରାଜ ପିତାଙ୍କୁ ରାଜ୍ୟ ଚଳାଇବାରେ ସାହାଯ୍ୟ କରନ୍ତି ଏବଂ ରାଜ୍ୟର କେତେକ ବିଷୟ ବୁଝନ୍ତି । ସେଥିରେ ସେ ରାଜ୍ୟଶାସନ ସମ୍ବନ୍ଧରେ ଅନେକ କଥା ଶିଖନ୍ତି ।

ଖାରବେଳଙ୍କୁ ରାଜ୍ୟଶାସନ ବିଷୟ ଶିଖାଇବା ନିମନ୍ତେ ଛଅ ଜଣ ବଡ଼ ପଣ୍ଡିତ ଥିଲେ । ଜଣେ ପଣ୍ଡିତ ତାଙ୍କୁ 'ଲେଖ' ଶିଖାଉଥିଲେ । ରାଜାଙ୍କ ଆଦେଶ ଚିଠିପତ୍ର ପ୍ରଭୃତି ଉପରେ ଲେଖାଯିବ, ତାହାକୁ ଲେଖ କୁହାଯାଉଥିଲା । ଆଉ ଜଣେ ତାଙ୍କୁ 'ରୂପ' ଶିଖାଉଥିଲେ । ରୂପ ବୋଇଲେ ଅର୍ଥନୀତି । ରାଜା ଜମି, ଜଙ୍ଗଲ, ଖଣି, ବ୍ୟବସାୟ ପ୍ରଭୃତି କେଉଁ କେଉଁଠାରୁ

କର ଅସୁଲ କରିବେ, କାହା ଉପରେ କେତେ କର ବଢ଼ାଇବେ, ଇତ୍ୟାଦି କଥା ଖାରବେଳ ରୂପରୁ ଶିଖିଲେ ।

ଅନ୍ୟ ଜଣେ ପଣ୍ଡିତ ତାଙ୍କୁ 'ଗଣନା' ଶିଖାଉଥିଲେ । ଗଣନା ବୋଇଲେ ରାଜ୍ୟର ଆୟବ୍ୟୟ ହିସାବ । ରାଜା ପ୍ରଜାଙ୍କଠାରୁ କେତେ ରାଜସ୍ୱ ପାଆନ୍ତି, କେଉଁ ବିଭାଗରେ କେତେ ଖର୍ଚ୍ଚ କରିବେ, ଇତ୍ୟାଦି କଥା ନଜାଣିଲେ, ରାଜ୍ୟ ଚଳାଇ ହେବ ନାହିଁ ।

ଖାରବେଳ ମୋକଦ୍ଦମା ବିଚାର କରିବା ନିମନ୍ତେ ବ୍ୟବହାର ଶିଖିଥିଲେ । ଭାରତରେ ସ୍ମୃତି ଶାସ୍ତ୍ର ଅଛି । ମନୁ, ଯାଜ୍ଞବଲ୍କ୍ୟ, ପରାଶର ଆଦି ଋଷିମାନେ ସ୍ମୃତି ଶାସ୍ତ୍ରମାନ ଲେଖିଛନ୍ତି । ସେଥିରେ ଲେଖାଅଛି, କିଏ କ'ଣ କଲେ, କ'ଣ ଦଣ୍ଡ ପାଇବ । ଜମି, ଋଣ ଆଦି ବିଷୟରେ ଦୁଇ ଜଣଙ୍କ ମଧ୍ୟରେ ବିବାଦ ହେଲେ, ତାହାର କିପରି ନିଷ୍ପତ୍ତି ହେବ । ସେସବୁ ନ ଜାଣିଲେ, ରାଜା ଭଲରୂପେ ମୋକଦ୍ଦମା ନିଷ୍ପତ୍ତି କରିପାରିବେ ନାହିଁ ।

ରାଜନୀତି ଜାଣିବା ନିମନ୍ତେ ଖାରବେଳ 'ବିଧି' ମଧ୍ୟ ଶିଖିଲେ । ଅନ୍ୟ ରାଜାଙ୍କ ସଙ୍ଗେ କିପରି ସମ୍ପର୍କ ରଖିବେ, କାହା ସଙ୍ଗେ ବନ୍ଧୁତା, କାହା ସଙ୍ଗେ ଯୁଦ୍ଧ ପ୍ରଭୃତି କରିବେ, କେଉଁଠାରେ ଦୁର୍ଗ, ରାଜଧାନୀ, ସଡ଼କ ପ୍ରଭୃତି ତିଆରି କରିବେ, କିପରି ଲୋକଙ୍କୁ ମନ୍ତ୍ରୀ, ସେନାପତି ରୂପେ ରଖିବେ, ପ୍ରଜାମାନଙ୍କ ସଙ୍ଗେ କିପରି ବ୍ୟବହାର କରିବେ, ଏସବୁ ରାଜ୍ୟ ଚଳାଇବା କଥା ଶିଖିବାକୁ ବିଧି କୁହାଯାଏ ।

ଖାରବେଳ ଏହା କେବଳ ପଢ଼ିବା ଦ୍ୱାରା ଶିଖି ନଥିଲେ । ଶାସ୍ତ୍ର ସଙ୍ଗେ ମିଳାଇ, ରାଜ୍ୟର ବାସ୍ତବ ବିଷୟମାନ ପରିଚାଳନା କରି, କର୍ମକ୍ଷେତ୍ରରେ ବ୍ୟବହାର ଦ୍ୱାରା ପ୍ରତ୍ୟେକ ବିଷୟରେ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ କରିଥିଲେ । ରାଜ୍ୟର ମନ୍ତ୍ରୀମାନେ ଏହା ତାହାଙ୍କୁ ଶିଖାଇଥିଲେ । ବଡ଼ ବଡ଼ ପ୍ରବୀଣ ପଣ୍ଡିତ ବାଛି ବାଛି ତାଙ୍କ ପିତା ମନ୍ତ୍ରୀ, ବିଚାରପତି, ସେନାପତି ରୂପେ ନିଯୁକ୍ତ କରିଥିଲେ । ସେହିମାନେ ତାଙ୍କୁ ସବୁ ପ୍ରତ୍ୟକ୍ଷ କର୍ମକ୍ଷେତ୍ରରେ ଶିଖାଇଥିଲେ ।

ଏ ସମସ୍ତ ବିଦ୍ୟା ଶିଖିବାକୁ ଯୁବରାଜ ଖାରବେଳଙ୍କୁ ନଅ ବର୍ଷ ଲାଗିଲା । ତାଙ୍କୁ ଯେତେବେଳେ ଚବିଶ ପଚିଶ ବର୍ଷ ବୟସ ହେଲା, ସେତେ-

ବେଳେ ସେ କଳିଙ୍ଗ ରାଜା ରୂପେ ଅଭିଷିକ୍ତ ହେଲେ । ସେତେବେଳେ ଠାଇଁ, ତାଙ୍କ ପିତା ରାଜକାର୍ଯ୍ୟରୁ ଅବସର ନେଲେ ଏବଂ ଧ୍ୟାନ ବା ଈଶ୍ୱରଚିନ୍ତାରେ କାଳ କଟାଇଲେ କିମ୍ବା ଇହଲୀଳା ଶେଷ କଲେ ।

ଖାରବେଳ ରାଜା ହେବାର ଠିକ୍ ଆଗରୁ ତୋଷାଳିରେ ଗୋଟିଏ ବଡ଼ ବତାତାଫାନ ହୋଇଥିଲା । ସେଥିରେ ତାଙ୍କ ରାଜଧାନୀର ବହୁତ କ୍ଷତି ହୋଇଥିଲା । ଖାରବେଳ ସବୁ କଥା ଭଲ ରୂପେ ଶିଖିଥିଲେ । ସେ ୩୫ ଲକ୍ଷ ଟଙ୍କା ଖର୍ଚ୍ଚ କରି କ୍ଷତିକୁ ସଜାଡ଼ି ଦେଲେ । ଦୁର୍ଗର ପ୍ରାଚୀର ମରାମତି ହେଲା । ରାଜପ୍ରାସାଦଟି ଠିକ୍ କରାଇ ଦିଆଗଲା । ପୋଖରୀ, କେନାଲ, ନାଳ, ବଗିଚା ଯାହା କିଛି ଭାଙ୍ଗିରୁଜି ଯାଇଥିଲା, ପୋତି ହୋଇଥିଲା, ସବୁ ଠିକ୍ କରାଇ ଦିଆହେଲା ।

ନିଜ ଦୁର୍ଗ ଓ ରାଜଧାନୀକୁ ଦୃଢ଼ କରିବା ପରେ ଖାରବେଳ ମନେକଲେ, ସେ ଦିଗ୍‌ବିଜୟ କରି ନିକଟବର୍ତ୍ତୀ ରାଜ୍ୟମାନ ଜିଣିବେ । ଏଥି ସକାଶେ ତାଙ୍କର ସେନାର ସଂଖ୍ୟା ଓ ସୈନିକମାନଙ୍କ ଶିକ୍ଷା ଠିକ୍ ରହିବା ଦରକାର । ତେଣୁ ସେ ଗୋଟାଏ ସୈନ୍ୟ ପ୍ରଦର୍ଶନୀର ଅନୁଷ୍ଠାନ କଲେ । ତାଙ୍କର ଯୁଦ୍ଧର ଅସ୍ତ୍ର ଶସ୍ତ୍ର, ହାତୀ ଘୋଡ଼ା, ସୈନିକ ସବୁ ପ୍ରଦର୍ଶନୀରେ ଠୁଳ କରାହେଲା । ନିଜେ ଖାରବେଳ, ତାଙ୍କ ମନ୍ତ୍ରୀମାନେ, ସେନାପତିମାନେ ବୁଲି ବୁଲି ସମସ୍ତ ପରୀକ୍ଷା କଲେ । ଖାରବେଳ ବୁଝିଲେ ଏହି ସେନାଦ୍ୱାରା ସେ ଶତ୍ରୁରାଜ୍ୟ ଜିଣିପାରିବେ ।

କଳିଙ୍ଗର ଦକ୍ଷିଣରେ ଗୋଦାବରୀ ନଦୀର ଆରପାରିରେ ଥିଲା ଆନ୍ଧ୍ର ରାଜ୍ୟ । ଏହି ଆନ୍ଧ୍ରମାନେ ଥରେ କଳିଙ୍ଗ ଜିଣିଥିଲେ । ଖାରବେଳ ରାଜତ୍ୱର ଦ୍ୱିତୀୟ ବର୍ଷରେ ପ୍ରଥମ କରି ଆନ୍ଧ୍ରରାଜ୍ୟ ଆକ୍ରମଣ କଲେ । ଆନ୍ଧ୍ରରାଜା ପରାସ୍ତ ହୋଇ ଖାରବେଳଙ୍କୁ ବଡ଼ ବୋଲି ମାନିଲେ ।

କଳିଙ୍ଗର ପଶ୍ଚିମରେ ଭୋଜକ ଓ ରାଷ୍ଟ୍ରିକ (ବେରାର ଓ ମହାରାଷ୍ଟ୍ର) ରାଜ୍ୟମାନ ଥିଲା । ରାଜତ୍ୱର ଚତୁର୍ଥ ବର୍ଷରେ ଖାରବେଳ ସେହି ଦୁଇରାଜ୍ୟ ମଧ୍ୟ ଜିଣିଲେ ।

କଳିଙ୍ଗର ଉତ୍ତରରେ ମଗଧ ରାଜ୍ୟ ଥିଲା । ମଗଧ ସମ୍ରାଟ ଅଶୋକ କଳିଙ୍ଗ ଜୟ କରିଥିଲେ । ଅଶୋକଙ୍କ ପୂର୍ବର ଜଣେ ରାଜା ମହାପଦ୍ମ ନନ୍ଦ

କଳିଙ୍ଗ ଜୟକରି କଳିଙ୍ଗରୁ ଜୀନାସନ ମୂର୍ତ୍ତିଟି ନେଇ ଯାଇଥିଲେ । ତାହାଁର ପ୍ରତିଶୋଧ ନ ନେଇ ଖାରବେଳ କ'ଣ ଛାଡ଼ନ୍ତେ ?

ଖାରବେଳଙ୍କ ସମୟରେ ବୃହସ୍ପତି ମିତ୍ର ମଗଧର ରାଜା ଥିଲେ । ରାଜତ୍ଵର ଦଶମ ବର୍ଷରେ ଖାରବେଳ ମଗଧ ଆକ୍ରମଣ କଲେ । ବୃହସ୍ପତି ମିତ୍ର ମଥୁରାକୁ ମାମୁଁ ଘରକୁ ପଳାଇଗଲେ । ତେଣୁ ଦୁଇବର୍ଷ ପରେ ଖାରବେଳ ଆଉଥରେ ମଗଧ ଆକ୍ରମଣ କରି ବୃହସ୍ପତି ମିତ୍ରଙ୍କୁ ପରାସ୍ତ କଲେ । ସେ ମଗଧରୁ 'ଜୀନାସନ' ମୂର୍ତ୍ତିଟି କଳିଙ୍ଗକୁ ଫେରାଇ ଆଣିଥିଲେ ।

ରାଜତ୍ୱର ଦ୍ୱାଦଶ ବର୍ଷରେ ଖାରବେଳ ଉତ୍ତର ଭାରତ ଆକ୍ରମଣ କରି ମଥୁରା ପର୍ଯ୍ୟନ୍ତ ଯାଇଥିଲେ ଏବଂ ଉତ୍ତର ଭାରତରେ ଅନେକ ରାଜାଙ୍କୁ ଯୁଦ୍ଧରେ ଜିଣିଥିଲେ ।

ଯୁଦ୍ଧରେ ଏପରି ରାଜାମାନଙ୍କୁ ଜିଣିଲେ, ରାଜାମାନେ ଚକ୍ରବର୍ତ୍ତୀ ହୁଅନ୍ତି । ଚକ୍ରବର୍ତ୍ତୀ ରାଜା ରାଜସୂୟ ଯଜ୍ଞ କରନ୍ତି । ଅଧୀନ ରାଜାମାନେ ସେହି ଯଜ୍ଞକୁ ଆସି ଚକ୍ରବର୍ତ୍ତୀଙ୍କୁ ବଡ଼ ବୋଲି ସ୍ୱୀକାର କରନ୍ତି । ଖାରବେଳ ମଧ୍ୟ ଏକ ରାଜସୂୟ ଯଜ୍ଞ କରିଥିଲେ ଏବଂ କଳିଙ୍ଗର ଚକ୍ରବର୍ତ୍ତୀ ହୋଇଥିଲେ । ଏହା କଳିଙ୍ଗ ପକ୍ଷରେ ଏକ ଗୌରବର ବିଷୟ ହୋଇଥିଲା । କଳିଙ୍ଗ ରାଜ୍ୟକୁ ଖାରବେଳ ଏକ ସାମ୍ରାଜ୍ୟରେ ପରିଣତ କରିଥିଲେ । ସେତେବେଳେ କଳିଙ୍ଗ ଭାରତର ସର୍ବଶ୍ରେଷ୍ଠ ରାଜ୍ୟ ହୋଇଥିଲା ।

ଖାରବେଳ ନିଜ ବାର୍ଦ୍ଧକ୍ୟରେ ରାଜ୍ୟ ଛାଡ଼ି ଖଣ୍ଡଗିରିର ଏକ ଗୁମ୍ଫାରେ ରହିଥିଲେ ଏବଂ ଧର୍ମ ଚିନ୍ତାରେ କାଳ କଟାଇଥିଲେ । ଏହି ଗୁମ୍ଫାକୁ ଏବେ ହାତୀଗୁମ୍ଫା କହନ୍ତି । ତାଙ୍କ ରାଣୀ ମଧ୍ୟ ତାଙ୍କ ସଙ୍ଗେ ସେହି ଗୁମ୍ଫାରେ ରହିଥିଲେ । ହାତୀଗୁମ୍ଫାରେ ଖାରବେଳ ନିଜ ରାଜତ୍ୱର ଇତିହାସ ପଥର ଦେହରେ ଲେଖାଇଛନ୍ତି । ସେହି ଲେଖାକୁ 'ଖାରବେଳଙ୍କ ହାତୀଗୁମ୍ଫା ଅନୁଶାସନ' କହନ୍ତି । ଏହି ଅନୁଶାସନ ଆଜଯାଏଁ ସେଠାରେ ଅଛି ।

ହାତୀଗୁମ୍ଫା ଅନୁଶାସନ ଖୋଦା ହୋଇ ନ ଥିଲେ ଆମ୍ଭେମାନେ ଖାରବେଳଙ୍କ ଇତିହାସ ଜାଣି ପାରି ନ ଥାନ୍ତେ ।

ଖାରବେଳ ଆମ ଓଡ଼ିଶାର ଗୌରବ । କାରଣ ଓ ଜଣେ ଓଡ଼ିଆ ରାଜା । ସେ ଭାରତରେ 'ଓଡ଼ିଶା'କୁ ବଡ଼ କରିଥିଲେ ।

( ୨ )

## ସୋମଗୁପ୍ତ କେଶରୀ ବଂଶ

ରାୟପୁର ଜିଲ୍ଲାର ପ୍ରଧାନ ସହର ରାୟପୁର । ରାୟପୁରଠାରୁ ମହାନଦୀ ୪୦ ମାଇଲ୍ ଦୂର । ମହାନଦୀ କୂଳରେ 'ଶ୍ରୀପୁର' ବୋଲି ଏକ ଗାଁ ଅଛି । ଏହି ଗାଁ ଠାରେ ଡ଼ାକ୍ତର ଦୀକ୍ଷିତ ବୋଲି ଜଣେ ବିଦ୍ୱାନ୍ ଏବେ ମାଟି ଖୋଳି ପ୍ରାଚୀନ କୀର୍ତ୍ତି ବାହାର କରୁଛନ୍ତି । ସେଗୁଡ଼ିକ ମାଟି ତଳେ ପୋତି ହୋଇଥିଲି । ଯୋଡ଼ିଏ ପୁରୁଣା ଦେଉଳ ଭିତରେ ବୁଦ୍ଧଦେବଙ୍କର ସାଢ଼େ ଛଅ ଫୁଟ ଉଚ ମୂର୍ତ୍ତି ଅଛି । ଚୀନ ଦେଶର ଗୋଟିଏ ତାମ୍ରମୁଦ୍ରା ମଧ୍ୟ ସେଠାରୁ ମିଳିଛି ।

ଜଣାପଡ଼ୁଛି, ଶ୍ରୀପୁର ପୂର୍ବକାଳରେ ଗୋଟିଏ ବଡ଼ ସହର ଥିଲି । ସେଠା ଲୋକ ବୌଦ୍ଧ ଥିଲେ । ଶ୍ରୀପୁରରେ ବାଣିଜ୍ୟ ବ୍ୟବସାୟ ଖୁବ୍ ଚାଲୁଥିଲି । ସେଠାରେ କୌଣସି ଏକ ବଡ଼ ରାଜବଂଶ ରାଜୁତି କରୁଥିଲେ । ଏହା ଆଜକୁ ଦୁଇ ହଜାର ବର୍ଷର କଥା ହୋଇଥିବ ।

କାଳକ୍ରମେ ବୌଦ୍ଧଧର୍ମ ଶ୍ରୀପୁରରୁ ଲିଭିଗଲି । ନୂଆ ନୂଆ ରାଜବଂଶ ଶ୍ରୀପୁରକୁ ରାଜଧାନୀ କଲେ । ନୂଆ ବିଷ୍ଣୁ ମନ୍ଦିର, ଶିବ ମନ୍ଦିର ସେଠାରେ ତୋଳାଇଲେ । ସେହି ମନ୍ଦିର କାନ୍ଥରେ ନିଜ ବଂଶର ଇତିହାସ ମଧ୍ୟ ଲେଖାଇଲେ । ଏହି ମନ୍ଦିର ଓ ଲେଖା ଆଜି ପର୍ଯ୍ୟନ୍ତ ଅଛି ।

ଶ୍ରୀପୁରର ଲକ୍ଷ୍ମଣ ଦେଉଳରେ ବାଳାର୍ଜ୍ଜୁନ ବୋଲି ଜଣେ ରାଜାଙ୍କର ଏକ ଶିଳାଲେଖ ଅଛି ।

ବାଳାର୍ଜ୍ଜୁନ ସୋମବଂଶ ବା ଯୁଧିଷ୍ଠିରଙ୍କ ବଂଶରେ ରାଜା ଥିଲେ । ତାଙ୍କ ବିରୁଦ ଥିଲି "ମହାଶିବଗୁପ୍ତ" । ତାଙ୍କର ପିତୃବ୍ୟ ଓ ପୂର୍ବବର୍ତ୍ତୀ

ରାଜା ଶିବରଦେବ ମହାଶିବଗୁପ୍ତ "ସକଳ କୋଶଳ"ର ରାଜାଥିଲେ ଏବଂ ଶିବରଦେବଙ୍କ ପରବର୍ତ୍ତୀ ରାଜା ଓ ବାଳାର୍ଜ୍ଜୁନଙ୍କ ପିତା ଶ୍ରୀହର୍ଷ ଗୁପ୍ତଦେବ ମହାଭବଗୁପ୍ତ ଗୌଡ଼, ଓଡ୍ର, କଳିଙ୍ଗ ଓ କୋଶଳର ଅଧିପତି ଥିଲେ । ହର୍ଷଗୁପ୍ତ ଜଣେ ପରାକ୍ରମୀ ଯୋଦ୍ଧା ଥିଲେ ।

ଏହି ସୋମବଂଶୀମାନଙ୍କୁ "ସୋମଗୁପ୍ତବଂଶ" କହନ୍ତି । ସୋମ-ଗୁପ୍ତବଂଶର ପୂର୍ବୋକ୍ତ ବାଳାର୍ଜ୍ଜୁନ ଥାନେଶ୍ୱରର ରାଜା ହର୍ଷବର୍ଦ୍ଧନଙ୍କ ସଙ୍ଗେ ଯୁଦ୍ଧ କରିଥିଲେ । ବାଳାର୍ଜ୍ଜୁନ ଶ୍ରୀପୁରରୁ 'ସକଳ କୋଶଳ' ଶାସନ କରୁଥିଲେ । ତାଙ୍କ ପକ୍ଷରୁ ତାଙ୍କ ଭ୍ରାତା "ରଣକେଶରୀ" ଗୌଡ଼, ଓଡ୍ର ଓ କଳିଙ୍ଗ ଶାସନ କରୁଥିଲେ ।

କିନ୍ତୁ ସୋମଗୁପ୍ତ ବଂଶ ଅଳ୍ପଦିନ ପରେ ରାଜଧାନୀ ଶ୍ରୀପୁର ହରାଇ ଥିଲେ । ବାଳାର୍ଜ୍ଜୁନଙ୍କ ପୁତ୍ର ଜନମେଜୟ ଶ୍ରୀପୁର ପରିତ୍ୟାଗ କରି ସମ୍ବଲପୁର କୋଶଳ ଖଣ୍ଡ ମାତ୍ର ପ୍ରତ୍ୟକ୍ଷରେ ଶାସନ କରୁଥିଲେ । ତାଙ୍କ ପକ୍ଷରୁ ଜଣେ ପ୍ରତିନିଧି ରହି ଚୌଦ୍ୱାରରୁ ଓଡ଼ିଶା ଶାସନ କରୁଥିଲେ ।

ଜନମେଜୟଙ୍କ ପୁଅ ଯଯାତିଙ୍କ ରାଜଧାନୀ ଥିଲା ମହାନଦୀ କୂଳରେ ସୋନପୁର । ଯଯାତିଙ୍କ ପୁଅ ଓ ପରବର୍ତ୍ତୀ ରାଜାଙ୍କ ନାମ ଭୀମରଥ ।

ଜନମେଜୟ, ଯଯାତି ଓ ଭୀମରଥ ଓଡ଼ିଶାର ସୋମଗୁପ୍ତ ବଂଶୀ ରାଜା । ଏହି ବଂଶର ଗୋଟିଏ ପୁରୁଷ 'ମହାଶିବଗୁପ୍ତ' ଏବଂ ଅନ୍ୟ ପୁରୁଷ 'ମହାଭବଗୁପ୍ତ' ବିରୁଦ ନେଇଥିଲେ । ତେଣୁ, ଜନମେଜୟ ମହାଭବଗୁପ୍ତ, ଯଯାତି ମହାଶିବଗୁପ୍ତ ଏବଂ ଭୀମରଥ ମହାଭବଗୁପ୍ତ ଥିଲେ ।

ଭୀମରଥ ସୋନପୁର ବା ପଶ୍ଚିମ ଲଙ୍କାରେ ଜଣେ ସାମନ୍ତ ଶାସନକର୍ତ୍ତା ରଖି ଚୌଦ୍ୱାରକୁ ଏବଂ ଚୌଦ୍ୱାରରୁ ଯାଜପୁରକୁ ରାଜଧାନୀ ଉଠାଇ ନେଇଥିଲେ ।

ସୋମଗୁପ୍ତମାନେ ସୋନପୁର, ଚୌଦ୍ୱାର ଓ ଯାଜପୁରରେ ତିନୋଟି ରାଜଧାନୀ ନଗରେ ନିର୍ମାଣ କରିଥିଲେ । ସେଗୁଡ଼ିକର ଭଗ୍ନାବଶେଷ ଏ ପର୍ଯ୍ୟନ୍ତ ଦେଖାଯାଏ । ଯାଜପୁରର ଦଶାଶ୍ୱମେଧ ଘାଟ ଓ ବିରଜା ମନ୍ଦିର ଏପର୍ଯ୍ୟନ୍ତ ଏହି ବଂଶର କୀର୍ତ୍ତି ଘୋଷଣା କରୁଅଛି । ଏମାନେ "ତ୍ରିକଳିଙ୍ଗାଧିପତି

କୋଶଳେଶ୍ୱର" ଉପାଧି ଗ୍ରହଣ କରିବାରୁ ଜଣାଯାଏ ଯେ, ସମଗ୍ର କୋଶଳ ଓ କଳିଙ୍ଗ ସେମାନଙ୍କର ସାମ୍ରାଜ୍ୟରେ ଅନ୍ତର୍ଭୁକ୍ତ ଥିଲା ।

ଯଯାତି ବ୍ରାହ୍ମଣ୍ୟ ଧର୍ମର ପୃଷ୍ଠପୋଷକ ଥିଲେ । ସେ କାନ୍ୟକୁବ୍ଜରୁ ଦଶହଜାର ବ୍ରାହ୍ମଣ ଅଣାଇ ଉତ୍କଳରେ ବାସ କରିବାକୁ ଦେଇଥିଲେ । ସେ ବ୍ରାହ୍ମଣମାନଙ୍କୁ ଗ୍ରାମମାନ ଦାନ କରି ନିଜ ଦାନକୁ ତମ୍ବା ପଟାମାନଙ୍କରେ ଲେଖାଇଥିଲେ । ଲୋକେ କହନ୍ତି, ସେ ପୁରୀରେ ଜଗନ୍ନାଥଙ୍କ ନିମନ୍ତେ ଗୋଟିଏ ଦେଉଳ ତୋଳାଇଥିଲେ ।

ଯଯାତି ଓ ତାଙ୍କ ବଂଶଧରମାନେ ଭୁବନେଶ୍ୱରରେ ଅସଂଖ୍ୟ ଶିବ ମନ୍ଦିର ନିର୍ମାଣ କରିଥିଲେ । ପରଶୁରାମେଶ୍ୱର ଓ ମୁକ୍ତେଶ୍ୱରଙ୍କ ଦେଉଳ ଏହି ବଂଶର ରାଜାମାନେ ନିର୍ମାଣ କରିଥିଲେ । ଜନମେଜୟ, ଯଯାତି ଓ ଭୀମରଥ ତମ୍ବା ପଟାମାନଙ୍କରେ ନିଜକୁ "ପରମ ମାହେଶ୍ୱର" ବୋଲି ବର୍ଣ୍ଣନା କରିଛନ୍ତି । ସେଥିରୁ ଜଣାଯାଏ ଯେ, ସେମାନେ ଶିବୋପାସକ ଥିଲେ । କୋଶଳ ଦେଶରେ ଯେତେ ଶିବମନ୍ଦିର ଅଛି, ସବୁଠାରେ ଶୂଦ୍ର ପୂଜକ ରହିଛନ୍ତି । କେଶରୀ ରାଜାମାନେ କୋଶଳରୁ ଆସିଥିଲେ । ସେମାନେ ଯେତେ ଶିବମନ୍ଦିର ନିର୍ମାଣ କଲେ, ସବୁଠାରେ ଶୂଦ୍ର ପୂଜକ ରଖିଥିଲେ ।

କେଶରୀ ବଂଶର ଲଲାଟେନ୍ଦୁ କେଶରୀ ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର ନିର୍ମାଣ କରିଥିଲେ । ଏହି ମନ୍ଦିରର କାରୁକାର୍ଯ୍ୟ ଦେଖିବାକୁ ଅତି ସୁନ୍ଦର । ଦେଶ ବିଦେଶରୁ ବଡ଼ ବଡ଼ ବିଦ୍ୱାନମାନେ ଏହି ମନ୍ଦିରର କାରୁକାର୍ଯ୍ୟ ଦେଖିବାକୁ ଆସନ୍ତି ।

ଭୁବନେଶ୍ୱରର ବ୍ରହ୍ମେଶ୍ୱର ମନ୍ଦିରର ଶିଳାଲିପିରେ ଲେଖାଅଛି ଯେ, କେଶରୀ ବଂଶର ଯଯାତି କେଶରୀଙ୍କ ଭାର୍ଯ୍ୟା କୋଳାବତୀ ନିର୍ମାଣ କରିଥିଲେ 'ବ୍ରହ୍ମେଶ୍ୱର ମନ୍ଦିର' । ଏହି ଯଯାତି ଜନମେଜୟଙ୍କ ପୁଅ ଯଯାତି ନୁହନ୍ତି । ଏହି ଯଯାତିଙ୍କ ପୁଅର ନାମ ଉଦ୍ୟୋତ କେଶରୀ । ଏହି ଉଦ୍ୟୋତ କେଶରୀ ଉଦୟଗିରିର ମନ୍ଦିର ଓ ଗୁମ୍ଫାଗୁଡ଼ିକର ଜୀର୍ଣ୍ଣ ସଂସ୍କାର କରିଥିଲେ । ସମ୍ଭବତଃ ଏହି ଉଦ୍ୟୋତ କେଶରୀଙ୍କ ଅନ୍ୟ ନାମ ଲଲାଟେନ୍ଦୁ କେଶରୀ । ମାଦଳା ପାଞ୍ଜିରେ ଲଲାଟେନ୍ଦୁ କେଶରୀ ବଂଶର ପଞ୍ଚମ ରାଜା ବୋଲି କୁହା ଯାଇ-ଅଛନ୍ତି ଏବଂ ଉଦ୍ୟୋତ କେଶରୀ ଉଦୟଗିରିରେ ଯେଉଁ ନବ ମୁନିଗୁମ୍ଫା

ନିର୍ମାଣ କରିଥିଲେ ତାକୁ "ଲଲାଟେନ୍ଦୁ କେଶରୀ ଗୁମ୍ଫା" ବୋଲି ମଧ୍ୟ କହନ୍ତି । ଲଲାଟେନ୍ଦୁ କୃତ୍ତିବାସ ବା ଶିବଙ୍କ ନିମନ୍ତେ ଭୁବନେଶ୍ୱରର ଲିଙ୍ଗରାଜ ଦେଉଳ ତୋଳାଇଥିଲେ ।

"ଭୁବନେଶ୍ୱର ଦେଉଳ" ଓ 'ଲିଙ୍ଗରାଜ ଦେଉଳ'ର ଶିଳ୍ପ କାରୁକାର୍ଯ୍ୟ କେହି କାହାରିକ ଊଣା ନୁହେଁ ।

ଉଦ୍ୟୋତକେଶରୀ ଏବଂ ତାଙ୍କ ପିତା ଚଣ୍ଡୀହାର ଯଯାତି ମହାଶିବଗୁପ୍ତ ଉଭୟେ ଅତି ବିଖ୍ୟାତ ରାଜା ଥିଲେ । ଚଣ୍ଡୀହାର ଗୌଡ଼, ରାଢ଼, ବଙ୍ଗ ଓ ଲାଟର ଅଧିରାଜ ଥିଲେ । ତାଙ୍କର ଏକ ତାମ୍ରଶାସନରୁ ଏ କଥା ଜଣାଯାଏ । ସେ ବୌଦ୍ଧ ଓ ଜୈନଧର୍ମଗ୍ରନ୍ଥ ଆଲୋଚନା କରୁଥିଲେ ଏବଂ ଧର୍ମପ୍ରାଣ ଥିଲେ ।

ଏତେବେଳେ ଟାଂ ରାଜବଂଶର ପ୍ରସିଦ୍ଧ ସମ୍ରାଟ ତାଇ ସଂ ଚୀନରେ ରାଜତ୍ୱ କରୁଥିଲେ । ସେ ୬୧୮ ଖ୍ରୀଷ୍ଟାବ୍ଦରେ ସିଂହାସନ ଆରୋହଣ କରିଥିଲେ ଏବଂ ପାରସ୍ୟ ପର୍ଯ୍ୟନ୍ତ ଚୀନର ସୀମା ବଢ଼ାଇଥିଲେ । ତାଙ୍କ ଦରବାରରେ ଗ୍ରୀକ୍, ପାରସିକ ଓ ଭାରତୀୟ ରାଜଦୂତମାନେ ବନ୍ଧୁତା ସୂତ୍ରରେ ବାସ କରୁଥିଲେ ।

ତାଇ ସଂ ଚୀନରେ ବିଦ୍ୟାର ବିଶେଷ ଉନ୍ନତି କରିଥିଲେ । ତାଙ୍କ ଅମଳରେ ଚୀନର ଏକ ବ୍ୟବସ୍ଥା ବା ଆଇନ ଗ୍ରନ୍ଥ ଏବଂ ଚୀନ ଦେଶର ଇତିହାସ ଲିଖିତ ହୋଇଥିଲା ।

ଏମ୍-ସିଲଭାନ ଲେଭି ଚୀନ ଭାଷାରୁ ସେହି ଚୀନ ଇତିହାସ ଅନୁବାଦ କରିଛନ୍ତି । ସେଥିରୁ ଜଣାଯାଏ ଯେ, ଓଡ଼ିଶାର କେଶରୀ ରାଜା ମହାଶିବ ବୌଦ୍ଧ ଧର୍ମଗ୍ରନ୍ଥ ଅବତଂସକରୁ ଶେଷ ଅଧ୍ୟାୟ 'ଗଣ୍ଡବ୍ୟୂହ'କୁ ନିଜ ହାତରେ ଉତାରି ତାଇ ସଂଙ୍କ ନିକଟକୁ ତାହା ଜଣେ ଦୂତଙ୍କ ହାତରେ ଉପହାର ସୂତ୍ରରେ ପଠାଇଥିଲେ ।

ଚଣ୍ଡୀହାର ଯଯାତି ମହାଶିବ ପ୍ରଜ୍ଞାନାମକ ଜଣେ ବିଦ୍ୱାନ୍ ବୌଦ୍ଧ ସନ୍ନ୍ୟାସୀଙ୍କୁ ଚୀନ ଦରବାରକୁ ଦୂତ ରୂପେ ପଠାଇଥିଲେ । ପ୍ରଜ୍ଞା କାବୁଲର କପିଙ୍ଗ୍ ବା କପିସାର ଅଧିବାସୀ । ସେ ନାଲନ୍ଦା ବିଶ୍ୱବିଦ୍ୟାଳୟରେ

ଅଠର ବର୍ଷ ପାଠ ପଢିଥିଲେ ଏବଂ ଓଡ଼ିଶାର ଏକ ବୌଦ୍ଧବିହାରରେ ଯୋଗଦର୍ଶନ ଶିକ୍ଷା କରିଥିଲେ । ରାଜା ହର୍ଷ ତାଙ୍କଠାରୁ ଗଣ୍ଡବ୍ୟୂହ ପାଇ ତାଙ୍କୁ ବିଶେଷ ମାନସମ୍ଭ୍ରମରେ ନିଜ ଦରବାରରେ ଦୂତ ରୂପେ ଗ୍ରହଣ କରିଥିଲେ ।

ଶିଳାଲିପି ଓ ତାମ୍ରଫଳକମାନଙ୍କରୁ ସୋମଗୁପ୍ତ କେଶରୀ ବଂଶର ଏକ ଲତା ତଳେ ଦିଆଗଲା ।

୧ । ଜନମେଜୟ ମହାଭବଗୁପ୍ତ
|
୨ । ଯଜାତି ମହାଶିବଗୁପ୍ତ
|
୩ । ଭୀମରଥ ମହାଭବଗୁପ୍ତ
|
୪ । ଚଣ୍ଡୀହାର ଯଜାତି ମହାଶିବଗୁପ୍ତ
|
୫ । ଉଦ୍ୟୋତ ଲଲାଟେନ୍ଦୁ କେଶରୀ

କାଳକ୍ରମେ କେଶରୀମାନେ ମହାନଦୀ ଓ କାଠଯୋଡ଼ୀ ନଦୀ ମଧ୍ୟରେ 'ବରାଣାସୀ କଟକ' ନାମରେ ଏକ ଦୁର୍ଗ ନଗରେ ନିର୍ମାଣକରି ଭୁବନେଶ୍ୱରରୁ କଟକକୁ ରାଜଧାନୀ ଉଠାଇ ନେଲେ । କଟକ ସହର ନଈବଢିରେ ଭାସିଯିବ ନାହିଁ ବୋଲି ମରକତ କେଶରୀ କାଠଯୋଡ଼ି ପଥରବନ୍ଧ ନିର୍ମାଣ କରିଥିଲେ ।

କେଶରୀବଂଶ, ଗୋଟିଏ ରାଜବଂଶ, ଯେଉଁମାନେ ଦୁର୍ଗ, ନଗର, ଦେଉଳ, ଗୁମ୍ଫା ଓ ପଥରବନ୍ଧ ନିର୍ମାଣ କରି ଓଡ଼ିଶାକୁ ଭାରତରେ ବିଖ୍ୟାତ କରିଅଛନ୍ତି । ଏତେ କୀର୍ତ୍ତି ଓଡ଼ିଶାର ବା ଭାରତର କୌଣସି ରାଜବଂଶ କେବେ ରଖି ଯାଇନାହାନ୍ତି । ଯେବେ କାହାରିକି ପଚ୍ଚାରିବ, କେଶରୀ ବଂଶର କୀର୍ତ୍ତି କେତେ ଦିନ ରହିବ ? ତେବେ ଶୁଣିବ, ପଥରର କୀର୍ତ୍ତି କାଳ ସଙ୍ଗେ ମଧ୍ୟ ଏହା ଯୁଦ୍ଧ କରୁଛି । କାଳ ଶେଷକୁ କେବେ ଜିଣିବ, ସେ କଥା ଏକ୍ଷଣି କୁହାଯାଇ ପାରିବ ନାହିଁ ।

( ୩ )

## ଗଙ୍ଗ ବଂଶ

କେଶରୀ ବଂଶର ଶେଷ ରାଜା ସୁବର୍ଣ୍ଣକେଶରୀ । ତାଙ୍କ ଉତ୍କଳ ରାଜ୍ୟ ଋଷିକୁଲ୍ୟା ନଦୀଠାରୁ ସୁବର୍ଣ୍ଣରେଖା ନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା ।

ଋଷିକୁଲ୍ୟାଠାରୁ ଗୋଦାବରୀ ମଧ୍ୟରେ କଳିଙ୍ଗ ରାଜ୍ୟ ଅବସ୍ଥିତ ଥିଲା । କଳିଙ୍ଗର ରାଜଧାନୀର ନାମ କଳିଙ୍ଗ ନଗର । କଳିଙ୍ଗ ନଗରକୁ ଆଜିକାଲି ମୁଖଲିଙ୍ଗ କହନ୍ତି । ଏହା ଏବେ ପାରଳାଖେମୁଣ୍ଡିରେ ଅଛି ।

କଳିଙ୍ଗରେ ଗଙ୍ଗବଂଶ ରାଜତ୍ୱ କରୁଥିଲେ । ସେ ବଂଶର ରାଜରାଜ ଦେବ ଚୋଳ ରାଜକନ୍ୟା ରାଜସୁନ୍ଦରୀଙ୍କୁ ବିଭା ହୋଇଥିଲେ । ଚୋଳ ରାଜ୍ୟ କଳିଙ୍ଗର ଦକ୍ଷିଣକୁ ଲାଗିଥିଲା । ରାଜରାଜ ଓ ରାଜସୁନ୍ଦରୀଙ୍କ ପୁଅର ନାମ ଅନନ୍ତବର୍ମା । ସେ ପିତୃକୁଳରେ ଗଙ୍ଗବଂଶର ଏବଂ ମାତୃକୁଳରେ ଚୋଳ-ବଂଶରୁ ଜାତ ହୋଇଥିବାରୁ ନିଜକୁ ଅନନ୍ତବର୍ମା ଚୋଳଗଙ୍ଗ ଦେବ ବୋଲି ଜଣାଇ ଦେଉଥିଲେ ।

ଅନନ୍ତବର୍ମା ପିଲାଦିନେ ଅନେକ ପାଠ ପଢ଼ିଥିଲେ । ତାଙ୍କୁ ବେଦ, ବେଦାଙ୍ଗ ଆଦି ଜଣାଥିଲା ଏବଂ ସେ ଯୁଦ୍ଧ ବିଦ୍ୟାରେ ପାରଙ୍ଗମ ଥିଲେ ।

ଅନନ୍ତବର୍ମା ପିତାଙ୍କ ପରେ ୧୦୭୬ ରେ କଳିଙ୍ଗ ନଗର ରାଜା ହୋଇଥିଲେ ।

ଏତେବେଳେ ଉତ୍କଳର ରାଜା ସୁବର୍ଣ୍ଣକେଶରୀ ଦୁର୍ବଳ ହୋଇ ପଡ଼ିଥିଲା । ଅନନ୍ତବର୍ମା ପ୍ରାୟ କୋଡ଼ିଏ ବର୍ଷ ରାଜୁତି କରିବା ପରେ ଉତ୍କଳ ଆକ୍ରମଣ କଲେ । ସୁବର୍ଣ୍ଣକେଶରୀ ଯୁଦ୍ଧରେ ପରାସ୍ତ ହୋଇ ଅନନ୍ତବର୍ମାଙ୍କ ସାମନ୍ତ ରାଜାରେ ପରିଣତ ହେଲେ । ଅନନ୍ତବର୍ମା ଆହୁରି କୋଡ଼ିଏ ବର୍ଷ ପରେ ୧୧୩୪ରେ ପୁଣି ଉତ୍କଳ ଆକ୍ରମଣ କରି ଉତ୍କଳକୁ ନିଜ ରାଜ୍ୟରେ ମିଶାଇ ନେଇଥିଲେ ।

ଯେତେବେଳେ ଅନନ୍ତବର୍ମା କଳିଙ୍ଗର ରାଜା ଥିଲେ, କୁମାର ପାଳ ଗୌଡ଼ ବଙ୍ଗଳାର ରାଜା ହୋଇଥିଲେ । ତାଙ୍କ ସାମନ୍ତ କାମରୂପ

(ଆସାମ)ର ରାଜା ଓ ରାଢ଼ (ପଶ୍ଚିମବଙ୍ଗ)ର ରାଜା ସ୍ୱାଧୀନତା ଘୋଷଣା କରିଥିଲେ । ଏଥିରେ କୁମାର ପାଳଙ୍କ ବଳ ଖୁବ୍ କମିଯାଇଥିଲା ।

ଅନନ୍ତବର୍ମା ଏହି ସୁବିଧାରେ ଗୌଡ଼ ଆକ୍ରମଣ କଲେ । ରାଢ଼ର ରାଜା ବିଜୟସେନ ତାଙ୍କୁ ସାହାଯ୍ୟ କଲେ । ଅନନ୍ତବର୍ମା ବଙ୍ଗଳାର ମନ୍ଦାରଣଦୁର୍ଗ ପର୍ଯ୍ୟନ୍ତ ଅଗ୍ରସର ହେଲେ । ମନ୍ଦାରଣଦୁର୍ଗର ରାଜା ଗଙ୍ଗାନଦୀ କୂଳରେ ପରାସ୍ତ ହେଲେ । ମନ୍ଦାରଣ ଅନନ୍ତବର୍ମାଙ୍କ ହସ୍ତଗତ ହେଲା । ମନ୍ଦାରଣ ଏବେ ହୁଗୁଳୀ ଜିଲ୍ଲାର ଅନ୍ତର୍ଗତ । ତାହାକୁ ଭିତରଗଡ଼ କହନ୍ତି । କୁମାରପାଳଙ୍କ ମନ୍ତ୍ରୀ ବୈଦ୍ୟଦେବ ଏକ୍ଷଣି ଅନନ୍ତବର୍ମାଙ୍କ ସଙ୍ଗେ ଯୁଦ୍ଧ କଲେ । ଗଙ୍ଗାନଦୀରେ ଜଳଯୁଦ୍ଧ ହେଲା । ବୈଦ୍ୟଦେବଙ୍କ ନୌଆଠ ହାହାରବରେ ଆଗକୁ ଅଗ୍ରସର ହେଲା । ସେମାନଙ୍କର ଆହୁଲ ସବୁରୁ ଏତେ ଜଳକଣା ଉପରକୁ ଉଠୁଥିଲା ଯେ, ଚନ୍ଦ୍ରମଣ୍ଡଳର କଳଙ୍କ ଧୋଇ ହୋଇ ଯାଇଥାନ୍ତା । ଅନନ୍ତବର୍ମା ବହୁ ଚେଷ୍ଟା କରି ସୁଦ୍ଧା ବୈଦ୍ୟଦେବଙ୍କୁ ସ୍ଥାନଚ୍ୟୁତ କରି-ପାରିଲେ ନାହିଁ କମ୍ବା ଗଙ୍ଗା ଅତିକ୍ରମ କରି ଆଗକୁ ଯିବି ପାରିଲେ ନାହିଁ । ସେ ଗଙ୍ଗା ବା ହୁଗୁଳୀ ନଦୀ ପର୍ଯ୍ୟନ୍ତ କଳିଙ୍ଗର ସୀମା ବୃଦ୍ଧି କରି ସନ୍ତୁଷ୍ଟ ରହିବାକୁ ବାଧ୍ୟ ହେଲେ ।

ହୁଗୁଳୀ ନଦୀ ପର୍ଯ୍ୟନ୍ତ ରାଜ୍ୟ ଅଧିକାର ଅନନ୍ତବର୍ମା କେଶରୀ ରାଜାଙ୍କଠାରୁ ୧୧୩୪ରେ ଉତ୍କଳ ଛଡ଼ାଇ ନେଇ ନିଜ ରାଜ୍ୟରେ ମିଶାଇ-ଦେଲେ ଏବଂ ୧୧୩୫ରେ କଳିଙ୍ଗ ନଗରରୁ 'କଟକ' ନଗରକୁ ରାଜଧାନୀ ପରିବର୍ତ୍ତନ କଲେ । ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ରାଜ୍ୟର ରାଜଧାନୀ କଟକରେ ରହିଲା । ସମ୍ରାଟ ଖାରବେଳଙ୍କ ପରେ ପ୍ରଥମ ହୋଇ ଓଡ଼ିଶାର ସୀମା ଗୋଦାବରୀଠାରୁ ଗଙ୍ଗା ପର୍ଯ୍ୟନ୍ତ ବିସ୍ତୃତ ହେଲା ।

ଜବଲପୁର ନିକଟରେ ତ୍ରିପୁରୀ କାଳଚୁରୀମାନଙ୍କର ରାଜଧାନୀ ଥିଲା । କାଳଚୁରୀମାନଙ୍କର ଏକ ଶାଖା ହୈହୟମାନେ ରତ୍ନପୁରରୁ ପ୍ରାଚୀନ କୋଶଳ ଶାସନ କରୁଥିଲେ । କାଳଚୁରୀ ବଂଶର ପତନ ପରେ ହୈହୟ-ମାନେ ପ୍ରବଳ ପରାକ୍ରାନ୍ତ ହୋଇଥିଲେ । ସେହି ବଂଶର ଜାଜଲ୍ଲ ଦେବ କେଶରୀ ରାଜାମାନଙ୍କଠାରୁ କୋଶଳ ଛଡ଼ାଇ ନେଇଥିଲେ ।

ଉତ୍ତର ଓ ଦକ୍ଷିଣରେ ଯଥାକ୍ରମେ ଗଙ୍ଗା ଓ ଗୋଦାବରୀ ରାଜ୍ୟସୀମା ହେବା ପରେ ଅନନ୍ତବର୍ମା ଶ୍ୱେତଗଙ୍ଗ ପଶ୍ଚିମ ସୀମା ରକ୍ଷାପ୍ରତି ମନୋଯୋଗୀ ହେଲେ ।

ରତ୍ନପୁରର ହୈହୟମାନେ କୋଶଳକୁ ହାତରେ ରଖିଥିଲେ । କୋଶଳ ବୋଇଲେ ସମ୍ବଲପୁର ଅଞ୍ଚଳ ଓ ଛତିଶଗଡ ଅଞ୍ଚଳ । କୋଶଳର ଅଧିକାର ନେଇ ହୈହୟ ଓ କେଶରୀମାନଙ୍କ ଭିତରେ ଅନେକ ଥର ଯୁଦ୍ଧ ହୋଇଥିଲା । କୋଶଳ ଯୁଦ୍ଧରେ କେତେବେଳେ କେଶରୀମାନେ, ଆଉ ବା କେତେବେଳେ ହୈହୟମାନେ ଜିଣୁଥିଲେ ।

ଅନନ୍ତବର୍ମାଙ୍କ ସମୟରେ ରତ୍ନଦେବ ହୈହୟମାନଙ୍କର ରାଜାଥିଲେ । ରତ୍ନଦେବଙ୍କ ହାତରୁ କୋଶଳ ଛଡ଼ାଇ ନେବା ନିମନ୍ତେ ଅନନ୍ତବର୍ମା ଯୁଦ୍ଧ କଲେ । ବିଳାସପୁର ନିକଟରେ ଏକ ଭୀଷଣ ରକ୍ତାକ୍ତ ଯୁଦ୍ଧ ହେଲା । ଯୁଦ୍ଧରେ ଅନନ୍ତବର୍ମା ହାରିଲେ ଏବଂ ରତ୍ନଦେବ ଜିଣିଲେ ।

କିଛିଦିନ ପରେ ୧୧୪୬ରେ ଅନନ୍ତବର୍ମା ଇହଲୀଳା ସାଙ୍ଗ କଲେ । ଅନନ୍ତବର୍ମାଙ୍କ ପରେ ଅନଙ୍ଗଭୀମ ଦେବ ଗଙ୍ଗବଂଶର ପ୍ରସିଦ୍ଧ ରାଜା । ସେ ଦ୍ୱାଦଶ ଶତାବ୍ଦୀର ଶେଷ ଆଡ଼କୁ କଳିଙ୍ଗର ରାଜା ହୋଇଥିଲେ ଏବଂ ଊଣା ଅଧିକରେ ତିରିଶ ବର୍ଷ ରାଜୁତି କରିଥିଲେ । ସମ୍ଭବ, ସେ ୧୧୯୩ରୁ ୧୨୨୩ ପର୍ଯ୍ୟନ୍ତ ରାଜା ଥିଲେ ।

କେଶରୀବଂଶର ରାଜା ଯଯାତି ପୁରୀରେ ଜଗନ୍ନାଥଙ୍କ ନିମନ୍ତେ ଗୋଟିଏ ଦେଉଳ ତୋଳାଇ ଦେଇଥିଲେ । ସେହି ଦେଉଳ ପୁରୁଣା ହୋଇ ଯାଇଥିଲା । ମାଦଳା ପାଞ୍ଜିରୁ ଜଣାଯାଏ, ଗଙ୍ଗବଂଶର ରାଜା ଅନଙ୍ଗଭୀମ ଦେବ ବା ଅମାତ୍ୟଙ୍କ ଭୀମଦେବ ଜଗନ୍ନାଥଙ୍କ ଲାଗି ଏକ ବିଶାଳ ନୂଆ ଦେଉଳ ନିର୍ମାଣ କରାଇଥିଲେ । ଏହି ଦେଉଳ ଆଜିପର୍ଯ୍ୟନ୍ତ ଅଛି । ଲୋକେ କହନ୍ତି, ଜଗନ୍ନାଥଙ୍କ ଦେଉଳର ଉଚ୍ଚତା ୧୨୦ ହାତ । ଦେଉଳ ତଳେ ଠିଆ ହୋଇ ଶିଖକୁ ଦେଖିଲେ, ମୁଣ୍ଡର ପଗଡ଼ି ତଳେ ପଡ଼ିଯାଏ । ଦେଉଳର ବେଢ଼ା ଭିତରେ ସାନ ବଡ଼ ହୋଇ ଅନେକ ଦେଉଳ ଅଛି । ଏଥିରେ କୋଟି କୋଟି ଟଙ୍କା ଖର୍ଚ୍ଚ ହୋଇଥିଲା । ଜଗନ୍ନାଥଙ୍କ ପୂଜାବିଧି ପାଇଁ ଅନଙ୍ଗଭୀମ

ଅନେକ ମାହଲ୍ ଖଞ୍ଜା କରି ଦେଇଥିଲେ ଏବଂ ଦେଉଳମାନଙ୍କର ରୁଖାସୁଖା ଲାଗି ଛତିଶା ନିଯୋଗ ତିଆରି କରିଥିଲେ ।

ପୁରୀ ଜଗନ୍ନାଥଙ୍କ ଦେଉଳ ପରି ବିଶାଳ ଦେଉଳ ପୃଥିବୀରେ ଅଳ୍ପ ଅଛି । ଦେଉଳର ବିଶାଳତା ଓ ଦୃଢ଼ତା ଦେଖି ଆଶ୍ଚର୍ଯ୍ୟ ହେବାକୁ ହୁଏ । ହଜାରେ ବର୍ଷ ହେଲାଣି ଏହି ଦେଉଳ ରହିଛି ଏବଂ କାଳକୁ ହସୁଛି । କେହି ଦେଖିଲେ କହିବ, ଦେଉଳଟି କାଲି ତିଆରି ହୋଇଛି । ପୁରୀ ଦେଉଳ ତୋଳାଇ ଅନଙ୍ଗଭୀମ ଅକ୍ଷୟକୀର୍ତ୍ତି ରଖି ଯାଇଛନ୍ତି ।

ଅନଙ୍ଗଭୀମ ୬୦ ଟି ଦେଉଳ ତୋଳାଇଥିଲେ । ସେ କେତେ କେତେ ନଈ ବନ୍ଧ ଓ ପୋଲ ନିର୍ମାଣ କରିଥିଲେ । ଏହାଛଡ଼ା ସେ ୩୬୦୦ ଗାଁ, ୪୫୬ ଶାସନ ଓ ୩୫୦ ହାଟ ବସାଇଥିଲେ ।

ଅନଙ୍ଗଭୀମ ରାଜ୍ୟସାକର ଭୂମି ମପାଇ ଏକ ରାଜସ୍ୱ ବନ୍ଦୋବସ୍ତ କରିଥିଲେ ।

ଆପଣାର କର ପରିମାଣ କାଠି କାଟି ।
ପଞ୍ଚବିଂଶ ହାତ ତିଆରିଲା ନଳ ଗୋଟି ।
( ସାରଳା ମହାଭାରତ—ଆଦିପର୍ବ )

ନଳ ବା ପଦିକା ୨୪ ବା ୨୫ ହାତ ଥିଲା । ଏହି ବାଉଁଶରେ ଜମି ମପା ଯାଉଥିଲା । ୨୫ ହାତ ଲମ୍ବ ଓ ୨୫ ହାତ ପ୍ରସ୍ଥ ଭୂମିକୁ ଏକ ବିଶ୍ୱା ଧାରି ଯାଉଥିଲା । ଷୋହଳ ବିଶ୍ୱା ଜମିକୁ ଏକ ଗୁଣ୍ଠ କହୁଥିଲେ ।

କୌଣସି କୌଣସିଠାରେ ନଳର ଦୈର୍ଘ୍ୟ କୋଡ଼ିଏ ହାତ ଥିଲା ।

କୋଡ଼ିଏ ହାତରେ କରିବୁ ଏକ କାଠି ।
ପଚିଶ ଗୁଣ୍ଠରେ ମାଣେ, ବିଂଶ ମାଣେ ବାଟି ।
( ସାରଳା ମହାଭାରତ—ଶାନ୍ତିପର୍ବ )

ପଚିଶ ଗୁଣ୍ଠରେ ଏକ ମାଣ ଏବଂ କୋଡ଼ିଏ ମାଣରେ ଏକ ବାଟି ହୁଏ । ପ୍ରଜାମାନେ ବାଟିକରୁ ଯେତେ ଆୟ କରନ୍ତି, ତହିଁରୁ ରାଜା କୋଡ଼ିଏ ଭାଗରୁ ଭାଗେ କର ନିଅନ୍ତି ।

ପୃଥ୍ୱୀରୁ ଯେତେ ଶସ୍ୟ ଉପୁଜାନ୍ତ ପ୍ରଜା ।
ବାଣ୍ଟିକେ ବଂଶ ଭାଗ ଦେଉଥାନ୍ତ ସଞ୍ଜା ।
(ସାରଳା ମହାଭାରତ—ଆଦିପର୍ବ)

ଗୋଚର, ଦଣ୍ଡା (ସଡ଼କ-ପଥ) ପ୍ରଭୃତି ଛାଡ଼ି କେବଳ ଉଠିଆ ଜମିରୁ ରାଜା ରାଜସ୍ୱ ଗ୍ରହଣ କରୁଥିଲେ ।

ଦଣ୍ଡା ଗୋପଥ ଛାଡ଼ି ଉଠିଆ ଯେତେ ଭୂମି ।
ତହିଁରୁ କର ଆଦାୟ କଲା ଦେବ ସ୍ୱାମୀ ।
(ସାରଳା ମହାଭାରତ—ଆଦିପର୍ବ)

ଜାଗିର, ବ୍ରହ୍ମୋତ୍ତର, ଦେବୋତ୍ତର ପ୍ରଭୃତି ଜମିର ଖଜଣା ମାଫିଥିଲା ।

ଥାନ ଜାଗିରର କର ଛାଡ଼ ପରଜାଙ୍କୁ ।
ବହନ ଭିଆଣ କଲେ ଭଣ୍ଡାରୁ ଦେବାକୁ ।
ଏ ବିଧି ଭିଆଣ କଲେ ଛତିଶ ମଣ୍ଡଳ ।
ଦେବ ବ୍ରାହ୍ମଣଙ୍କୁ ଛାଡ଼ କର ସର୍ବକାଳ ।
ନିଯୋଗ ଭୂମି ଛାଡ଼ଣ ଦେଲେ ଦେବତାଙ୍କୁ ।
ଯଜାତି ପାଞ୍ଜି ପ୍ରମାଣେ ପାଳଲେ ପ୍ରଜାଙ୍କୁ ।
(ସାରଳା ମହାଭାରତ—ଆଦିପର୍ବ)

ଏହି ବର୍ଣ୍ଣନାରୁ ଜଣାପଡେ, ଯଜାତି କେଶରୀଙ୍କ ସମୟରେ ମଧ୍ୟ ଏହି ବ୍ୟବସ୍ଥା ଥିଲା ।

କଟକ ଜିଲ୍ଲାର ପଦ୍ମପୁର ପ୍ରଗଣାରେ କୃଷ୍ଣପୁର ଗୋଟିଏ ଗାଁ । ସେ ଗାଁରେ ଗୁଟେଶ୍ୱର ମନ୍ଦିର ଅଛି । ଏହା ଦେଉଳ ୧୨୨୦ରେ ଅନଙ୍ଗଭୀମ ତୋଳାଇଥିଲେ । ଦେଉଳର ଏକ ଶିଳା ଲିପିରୁ ଜଣାପାଏ, ଅନଙ୍ଗଭୀମ ଦେବଙ୍କ ମନ୍ତ୍ରୀ ବିଷ୍ଣୁ ରତ୍ନପୁରର ଭୂମ୍ୟାଣ ରାଜାଙ୍କ ସଙ୍ଗେ ଯୁଦ୍ଧ କରିଥିଲେ । ଯୁଦ୍ଧମାନ ସମୁଦ୍ର କୂଳରେ (ଉତ୍କଳରେ) ଏବଂ ବିନ୍ଧ୍ୟ ପାଦଦେଶରେ (ସମ୍ବଲପୁର ଅଞ୍ଚଳରେ) ଘଟିଥିଲା । ଅର୍ଥାତ୍ ହୈହୟ ବା ଭୂମ୍ୟାଣ ରାଜା ଉତ୍କଳ ଆକ୍ରମଣ କରିବାବେଳେ ଉପକୂଳ ଅଞ୍ଚଳରେ ଯୁଦ୍ଧ ଘଟିଥିଲା ଏବଂ

ଅନଙ୍ଗଭୀମଦେବ କୋଶଳ ଆକ୍ରମଣ କରିବା ବେଳେ ବିନ୍ଧ୍ୟ ପାଦଦେଶରେ ଯୁଦ୍ଧ ଘଟିଥିଲା । ଶିଳାଲିପିର ବର୍ଣ୍ଣନାରୁ ଜଣାଯାଏ, "ତୁମ୍ମାଣ ରାଜା ଚତୁର୍ଦ୍ଦିଗରୁ ବିଷ୍ଣୁଙ୍କ ଆକ୍ରମଣ ଆଶଙ୍କା କରି ଚିତ୍ତଚକିତ ହୋଇ ଚତୁର୍ଦ୍ଦିଗ ବିଷ୍ଣୁମୟ ଦେଖିଲେ ।" ବିଷ୍ଣୁ ଧନୁରେ ଶର ଚଢ଼ାଇ "ବହୁ ବିଚକ୍ଷଣ ଯୋଦ୍ଧାଙ୍କୁ ହତ୍ୟା" କରିଥିଲେ । ଯୁଦ୍ଧରେ ତୁମ୍ମାଣ ରାଜା ପରାସ୍ତ ହୋଇଥିବା ଅନୁମାନ କରାଯାଏ ।

ତୁମ୍ମାଣ ରାଜା ଅନଙ୍ଗଭୀମ ଦେବଙ୍କ ସଙ୍ଗେ ସନ୍ଧି କରିଥିଲେ । ଦୁଇ ରାଜ୍ୟ ମଧ୍ୟରେ ବୈବାହିକ ସମ୍ପର୍କ ସ୍ଥାପିତ ହୋଇଥିଲା । ଆଧୁନିକ ସମ୍ବଲପୁର ଜିଲ୍ଲାର ଉତ୍ତର ସୀମା ପରେ ମହାନଦୀ ଦୁଇ ରାଜ୍ୟର ସୀମା ହେଲା । ଦଣ୍ଡକାରଣ୍ୟ ହୈହୟ ରାଜ୍ୟରେ ଏବଂ ସମ୍ବଲପୁର, କୋଶଳ ଓଡ଼ିଶାରେ ରହିଲା ।

ଅନଙ୍ଗଭୀମ ଦେବଙ୍କ ପରବର୍ତ୍ତୀ ବିଖ୍ୟାତ ଗଙ୍ଗରାଜା ନରସିଂହ ଦେବ । ହୈହୟ ବଂଶର ରାଜପୁତ୍ର ପରମାର୍ଦ୍ଦୀ ଦେବ ନରସିଂହ ଦେବଙ୍କ ଭଉଣୀ ଚନ୍ଦ୍ରିକା ଦେବୀଙ୍କୁ ବିଭା ହୋଇଥିଲେ ।

ଅନଙ୍ଗଭୀମଙ୍କ ରାଜତ୍ୱରେ ମୁସଲମାନମାନେ ବଙ୍ଗଳା ବା ଗୌଡ଼ ଅଧିକାର କରିଥିଲେ । ବଙ୍ଗଳାର ରାଜା ଲକ୍ଷ୍ମଣସେନ ସେମାନଙ୍କ ସଙ୍ଗେ ଯୁଦ୍ଧ ନ କରି ଓଡ଼ିଶାକୁ ପଳାଇ ଆସିଲେ ଏବଂ ଅନଙ୍ଗଭୀମଙ୍କ ଆଶ୍ରୟରେ ରହିଲେ ।

ନରସିଂହ ଦେବ ନିଜ ଭଉଣୀ ଜ୍ୱାଇଁ ପରମାର୍ଦ୍ଦୀ ଦେବଙ୍କୁ ଯାଜପୁରର ଶାସନକର୍ତ୍ତା ନିଯୁକ୍ତ କରିଥିଲେ । ପରମାର୍ଦ୍ଦୀ ଜଣେ ବିଖ୍ୟାତ ଯୋଦ୍ଧା ଥିଲେ । ସେ ୧୨୪୩ରେ ରାଢ଼ ବା ପଶ୍ଚିମ ବଙ୍ଗଳା ଆକ୍ରମଣ କଲେ । ସେ କଥା ଶୁଣି ବଙ୍ଗଳାର ମୁସଲମାନ ଶାସନ କର୍ତ୍ତା ତାଙ୍କୁ ଯୁଦ୍ଧରେ ଭେଟିବା ପାଇଁ ଆସିଲେ ।

ପରମାର୍ଦ୍ଦୀ ବଣ ଭିତରେ ଲୁଚି ଲୁଚି ଯାଇ ତାଙ୍କ ଶିବିର ଆକ୍ରମଣ କଲେ । କଟସିନଠାରେ ଯୁଦ୍ଧ ହେଲା । ତୁଘାନ ଖାଁ ପରାସ୍ତ ହୋଇ ପଳାୟନ କଲେ ।

୧୨୪୪ରେ ପରମାର୍ଦ୍ଦୀ ଆଉ ଥରେ ବଙ୍ଗଳା ଆକ୍ରମଣ କରି ରାଢ଼ର ରାଜଧାନୀ ଲଖନୋର ଅଧିକାର କଲେ ଏବଂ ଗୌଡ଼ (ବଙ୍ଗଳା) ରାଜଧାନୀ

ଲକ୍ଷଣାବତୀ (ଲକ୍ଷ୍ମଣାବତୀ) ଅବରୋଧ କଲେ । କିନ୍ତୁ ବର୍ଷାଋତୁ ପହଞ୍ଚି ଯିବାରୁ ଲକ୍ଷ୍ମଣାବତୀ ଅବରୋଧ ଛାଡ଼ି ଓଡ଼ିଶାକୁ ଫେରି ଆସିଲେ ।

ବଙ୍ଗଳାର ମେଦିନୀପୁର, ହୁଗୁଳୀ ଓ ହାଓଡ଼ା ଜିଲ୍ଲା ଓଡ଼ିଶାର ଅନ୍ତର୍ଭୁକ୍ତ ହେଲା ଏବଂ ଓଡ଼ିଶାର ସୀମା ପୁଣି ହୁଗୁଳୀନଦୀ ପର୍ଯ୍ୟନ୍ତ ବିସ୍ତୃତ ହେଲା ।

ନରସିଂହ ଦକ୍ଷିଣରେ ବିଦର ରାଜ୍ୟର କଲବର୍ଗା ମଧ୍ୟ ଅଧିକାର କରିଥିଲେ । ତେଣୁ ସେ "ଗୌଡ଼େଶ୍ୱର" "କର୍ଣ୍ଣାଟକଲବର୍ଗେଶ୍ୱର" ଉପାଧି ଗ୍ରହଣ କରିଥିଲେ ।

କୋଣାର୍କ ଦେଉଳ—ନରସିଂହ ଦେବଙ୍କ ଅକ୍ଷୟ କୀର୍ତ୍ତି କୋଣାର୍କ ଦେଉଳ । କୋଣାର୍କର ଶିଳ୍ପ କାରୁକାର୍ଯ୍ୟ ପୃଥିବୀ ପ୍ରସିଦ୍ଧ ହୋଇଅଛି । ଦେଉଳଟି ଏବେ ସମ୍ପୂର୍ଣ୍ଣ ରୂପେ ଭାଙ୍ଗି ପଡ଼ିଥିଲେ ମଧ୍ୟ ଭଗ୍ନାରୁଗ୍ଣ ଅବସ୍ଥାରେ ତହିଁର ଯେ କେତେକ କାରୁକାର୍ଯ୍ୟ ଅବଶିଷ୍ଟ ଅଛି, ତାହା ଦେଖିବା ନିମନ୍ତେ ୟୁରୋପ, ଆମେରିକା ପ୍ରଭୃତି ଦେଶରୁ ବିଖ୍ୟାତ ବିଦ୍ୱାନ ଓ ଗବେଷକମାନେ ଆସୁଛନ୍ତି ।

ଚନ୍ଦ୍ରଭାଗା ନଦୀ କୂଳରେ ସମୁଦ୍ର ନିକଟରେ କୋଣାର୍କ ଦେଉଳ ଅବସ୍ଥିତ । ସେହି ତୀର୍ଥର ନାମ ପଦ୍ମକ୍ଷେତ୍ର ବା ଅର୍କକ୍ଷେତ୍ର ଏବଂ ମାଘ ଶୁକ୍ଳ ସପ୍ତମୀ ଦିନ ସେଠାରେ ଚନ୍ଦ୍ରଭାଗା ସ୍ନାନମେଳା ହୁଏ ।

କୋଣାର୍କ ଦେଉଳରେ ସୂର୍ଯ୍ୟପ୍ରତିମା ପ୍ରତିଷ୍ଠିତ ଥିଲେ । ସୂର୍ଯ୍ୟଙ୍କ ରଥ ଆକାରରେ ଦେଉଳଟି ୨୪ଟି ଚକ ଉପରେ ନିର୍ମିତ ହୋଇଥିଲା ଏବଂ ତାକୁ ୭ଟି ଘୋଡ଼ା ଟାଣୁଥିଲେ । ଦେଉଳର ଉଚ୍ଚତା ୨୩୦ ଫୁଟ ।

ଓଡ଼ିଶାର ୧୨ ଶହ ଉତ୍କୃଷ୍ଟ ବଡ଼ାଇ ୧୨ ବର୍ଷରେ ଦେଉଳ ନିର୍ମାଣ କରିଥିଲେ । ସେଥିରେ ଓଡ଼ିଶାର ୧୨ ବର୍ଷର ଖଜଣା ୪୦ କୋଟି ଟଙ୍କା ଖର୍ଚ୍ଚ ହୋଇଥିଲା । ନରସିଂହଙ୍କ ମନ୍ତ୍ରୀ ଶିବେଇସାନ୍ତରା ମନ୍ଦିରର ନିର୍ମାଣ କାର୍ଯ୍ୟର ତତ୍ତ୍ୱ ନେଉଥିଲେ ।

ଦେଉଳରେ ବିଶାଳ ପଥରମାନ ଲାଗିଥିଲା । ଦୋହାର ଗଜସିଂହ ମୂର୍ତ୍ତିର ପଥରର ଓଜନ ଦଶହଜାର ମହଣ । ମନ୍ଦିର ଉପରର ଦଧିନଉତି ପଥରର ଓଜନ ଛପନ ହଜାର ମହଣ ।

କୋଣାର୍କର ଶିଳ୍ପକଳା ଅତି ଚମତ୍କାର । ମୂର୍ତ୍ତିଗୁଡ଼ିକ ଦେଖିବାକୁ ଜୀବନ୍ତ ପରି, କେବଳ ପ୍ରାଣବାୟୁ ନାହିଁ ।

ଏହା ଦେଉଳଟି ଭାଙ୍ଗିଯିବା ଦ୍ୱାରା ପୃଥିବୀର ଗୋଟିଏ ଉତ୍କୃଷ୍ଟ କୀର୍ତ୍ତି ଲୟ ହୋଇଛି ।

## ( ୪ )
## ସୂର୍ଯ୍ୟବଂଶ

ଗଙ୍ଗବଂଶର ଶେଷ ରାଜାଙ୍କର ପୁତ୍ରସନ୍ତାନ ନ ଥିଲେ । ତାଙ୍କର କପିଳେନ୍ଦ୍ର ନାମରେ ଜଣେ କ୍ଷତ୍ରିୟ ମନ୍ତ୍ରୀ ଥିଲେ । ରାଜାଙ୍କ ମୃତ୍ୟୁ ପରେ କପିଳେନ୍ଦ୍ର ରାଜା ରୂପେ ନିର୍ବାଚିତ ହୋଇ ସିଂହାସନ ଆରୋହଣ କରିଥିଲେ (୧୪୩୫) ।

କପିଳେନ୍ଦ୍ର ସିଂହାସନ ଆରୋହଣ କରିବା ସମୟରେ ଉତ୍କଳର ତିନ ଦିଗରେ ତିନୋଟି ଶକ୍ତିଶାଳୀ ରାଜ୍ୟ ଉତ୍କଳକୁ ଗ୍ରାସିଦେବାକୁ ବସିଥିଲେ, ବଙ୍ଗଳାର ସୁଲତାନ ନାସିରୁଦ୍ଦିନ ଉତ୍ତର ଆଡ଼ୁ, ବାହ୍ମନି ରାଜ୍ୟର ସୁଲତାନ ଆଲ୍ଲାଉଦ୍ଦିନ ମହମ୍ମଦ ପଶ୍ଚିମ ଆଡ଼ୁ ଏବଂ ବିଜୟ ନଗରର ପ୍ରବଳ ସମ୍ରାଟ୍ ଦେବରାୟ ଦକ୍ଷିଣ ଆଡ଼ୁ ଉତ୍କଳ ଆକ୍ରମଣ କରିବାର ଆୟୋଜନରେ ଥିଲେ ।

ରାଜ୍ୟ ମଧ୍ୟରେ ଦକ୍ଷିଣ ଉତ୍କଳର ସାମନ୍ତମାନେ ସ୍ୱାଧୀନତା ଘୋଷଣା କରିବାର ଚକ୍ରାନ୍ତ କରୁଥିଲେ । କପିଳେନ୍ଦ୍ର ଦକ୍ଷିଣ ଅଭିଯାନରେ ବାହାରିଲେ । ଖାରପଞ୍ଚମ ଓ ନନ୍ଦପୁରର ରାଜା ଗଙ୍ଗରାଜୁ ଯୁଦ୍ଧରେ ପରାସ୍ତ ହେଲେ । ତା'ପରେ ଓଡ଼ାଡ଼ି, ପଡନ୍ନୁରୁ ଓ କଲୁବଲ୍‌ପଲ୍ଲୀର ରେଡ୍ଡି ବଂଶୀୟ ରାଜାମାନେ ଯୁଦ୍ଧରେ ପରାସ୍ତ ହେଲେ । ଫେଡ୍ଡପୁରମ ଓ ରାଜମାହେନ୍ଦ୍ରୀ ଅଧିକାର କରି କପିଳେନ୍ଦ୍ର ସେଠାରେ ରଘୁନାଥ ଦେବ ନରେନ୍ଦ୍ର ମହାପାତ୍ରଙ୍କୁ ଶାସନକର୍ତ୍ତା ରୂପେ ରଖିଲେ ଏବଂ କୋଣ୍ଡବିଡୁରେ ଗଣଦେବ ରାଉତରାୟଙ୍କୁ ଶାସନକର୍ତ୍ତା ନିଯୁକ୍ତ କଲେ ।

ଇତିମଧ୍ୟରେ ବିଜୟନଗରର ସମ୍ରାଟ୍ ଦେବରାୟଙ୍କ ମୃତ୍ୟୁ ଘଟିଥିଲା । କପିଳେନ୍ଦ୍ର ୧୪୪୭ରେ କର୍ଣ୍ଣାଟ ଆକ୍ରମଣ କରି କାବେରୀ ନଦୀ ପର୍ଯ୍ୟନ୍ତ ଓଡ଼ିଶାର ସୀମା ବଢ଼ାଇଲେ ।

୧୪୫୯ରେ ବାହମନି ସୁଲତାନ ଓଡ଼ିଶାର ଦେବରକୋଣ୍ଡା ଆକ୍ରମଣ କଲେ । କପିଳେନ୍ଦ୍ରଙ୍କ ସେନା ଦେବରକୋଣ୍ଡା ରକ୍ଷା ପାଇଁ ଗଲେ ଏବଂ ଆକ୍ରମଣକାରୀଙ୍କୁ ଘେରିଗଲେ । ଦେବରକୋଣ୍ଡା ଦୁର୍ଗ ମଧ୍ୟରେ ଅବରୁଦ୍ଧ ଓଡ଼ିଆ ସୈନିକମାନେ ଦୁର୍ଗ ଭିତରୁ ବାହାରି ଯୁଦ୍ଧ କଲେ । ମୁସଲମାନ ସେନାପତି ଖ୍ୱାଜା ଇଜାହାନ ପଳାୟନ କଲେ ।

ସ୍ୱଳ୍ପବର୍ଷ ପରେ କପିଳେନ୍ଦ୍ର ବାହମନି ରାଜଧାନୀ କଲବର୍ଗା ଆକ୍ରମଣ କଲେ । ଅଳ୍ପଦିନ ସକାଶେ କଲବର୍ଗା ଓ ନବକୋଟ ଓଡ଼ିଶାରେ ମିଶିଲା । ଏହି କାର୍ଯ୍ୟ କରି କପିଳେନ୍ଦ୍ର 'ବୀର ଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟ କର୍ଣ୍ଣାଟ କଲବର୍ଗେଶ୍ୱର' ଉପାଧି ଗ୍ରହଣ କରିଥିଲେ ।

କପିଳେନ୍ଦ୍ର କୃଷ୍ଣା ନଦୀ କୂଳରେ ୧୪୬୬ରେ ଦେହତ୍ୟାଗ କରିଥିଲେ । ତାଙ୍କ ଅଭିଷେକ ଦିନଠାରୁ ସେ କପିଳେନ୍ଦ୍ରାବ୍ଦ ନାମରେ ଗୋଟିଏ ନୂଆ ଅଙ୍କ ଚଳାଇଥିଲେ । ଓଡ଼ିଶାରେ ଏହି ଅଙ୍କର ଏବେ ସୁଦ୍ଧା ବ୍ୟବହାର ଅଛି ।

କପିଳେନ୍ଦ୍ରଙ୍କ ପରେ ତାଙ୍କ ପୁଅ ପୁରୁଷୋତ୍ତମ ଦେବ ଓଡ଼ିଶାର ରାଜା ହେଲେ ।

୧୪୭୮ରେ ଚନ୍ଦ୍ରଗିରି ବା କାଞ୍ଚିର ରାଜା ନରସିଂହ ଶାଳୁବ ଚନ୍ଦ୍ରଗିରି, କର୍ଣ୍ଣାଟ ଓ ଉଦୟଗିରି, ନେଲୋର ମଧ୍ୟରେ ଥିବା ଓଡ଼ିଆ ରାଜ୍ୟ ଆକ୍ରମଣ କରି ଅଧିକାର କରିନେଲେ । ସେଠାରେ ଓଡ଼ିଆ ଶାସନକର୍ତ୍ତା କୁମାର କପିଳେଶ୍ୱର ମହାପାତ୍ର ଯୁଦ୍ଧ କଲେ । ଯୁଦ୍ଧରେ କପିଳେଶ୍ୱର ଏବଂ ବହୁ ସୈନିକ ନିହତ ହେଲେ ।

ସମ୍ବାଦ ପାଇ ପୁରୁଷୋତ୍ତମ ବିଶାଳ ବାହିନୀ ନେଇ କାଞ୍ଚି ଅଭିମୁଖରେ ବାହାରିଲେ । ନରସିଂହ ଶାଳୁବ ସନ୍ଧିକଲେ । ପୁରୁଷୋତ୍ତମଙ୍କୁ ଚନ୍ଦ୍ରଗିରି ଫେରାଇଦେଲେ । ଉଦୟଗିରି ଓ କାବେରୀ ମଧ୍ୟସ୍ଥ ଭୂଖଣ୍ଡ ଶାଳୁବଙ୍କ ରାଜ୍ୟରେ ରହିଲା । ନରସିଂହ ନିଜ କନ୍ୟା ରୂପାମ୍ବିକା ବା ପଦ୍ମାବତୀଙ୍କୁ ପୁରୁଷୋତ୍ତମ ଦେବଙ୍କ ହାତରେ ସମର୍ପଣ କରିଥିଲେ ।

ନରସିଂହ ପଛକୁ ଶୁଣିଲେ ଯେ, ଓଡ଼ିଆ ରାଜା ଜଗନ୍ନାଥଙ୍କ ରଥଯାତ୍ରାରେ ଛେରାପହଁରା କରନ୍ତି । ସେ ମନେକଲେ, ଏହା ଚଣ୍ଡାଳର କାର୍ଯ୍ୟ । ତେଣୁ ତାଙ୍କ ହସ୍ତରେ କନ୍ୟା ସମର୍ପଣ କରିବାକୁ ସେ ପଛକୁ ଅନିଚ୍ଛୁକ ହେଲେ ।

ପୁରୁଷୋତ୍ତମ ପ୍ରତିଜ୍ଞା କଲେ, ପଦ୍ମାବତୀଙ୍କୁ ପ୍ରକୃତ ଚଣ୍ଡାଳ ହସ୍ତରେ ନେଇ ଅର୍ପଣ କରିବେ । ତାଙ୍କ ମନ୍ତ୍ରୀ ବିଚକ୍ଷଣ ଲୋକଥିଲେ । ସେ ପଦ୍ମାବତୀଙ୍କୁ ନିଜ ଘରେ ରଖିଲେ । ରଥଯାତ୍ରା ଦିନ ରାଜା ଛେରାପହଁରା କରୁଥିବା ବେଳେ ସେ ପଦ୍ମାବତୀଙ୍କୁ ନେଇ ରାଜାଙ୍କ ହସ୍ତରେ ସମର୍ପଣ କଲେ ଏବଂ କହିଲେ, "ପ୍ରଭୁ ! ବର୍ତ୍ତମାନ ଆପଣ ଚଣ୍ଡାଳ, ପଦ୍ମାବତୀଙ୍କୁ ଗ୍ରହଣ କରି ନିଜ ପ୍ରତିଜ୍ଞା ପାଳନ କରନ୍ତୁ ।" ପୁରୁଷୋତ୍ତମ ଦେବ ପଦ୍ମାବତୀଙ୍କୁ ବିଭା ହେଲେ ।

କାଞ୍ଚିଯୁଦ୍ଧ ସରୁ ନ ସରୁଣୁ ୧୪୭୦ରେ ବାହମନିର ସୁଲତାନ ମହମ୍ମଦ ଓଡ଼ିଆ ରାଜ୍ୟ ଆକ୍ରମଣ କଲେ । ସେ ରାଜମାହେନ୍ଦ୍ରୀ ଓ କୋଣ୍ଡବିଦୁ ଅଧିକାର କଲେ । ପୁରୁଷୋତ୍ତମ ଦଶ ହଜାର ଅଶ୍ୱାରୋହୀ ଓ ଆଠହଜାର ପଦାତିକ ନେଇ ଯୁଦ୍ଧଯାତ୍ରା କଲେ । ଯୁଦ୍ଧରେ ସୁଲତାନ ମହମ୍ମଦ ତାଙ୍କୁ ପରାସ୍ତ କଲେ । ୧୪୭୭ରେ ରାଜମାହେନ୍ଦ୍ରୀ ଅଞ୍ଚଳ ଓଡ଼ିଆ ହାତରୁ ଖସିଗଲା । ଚନ୍ଦ୍ରଗିରି ଅଞ୍ଚଳ ଆଗରୁ ନରସିଂହ ଶାଳୁବଙ୍କ ହାତକୁ ଯାଇଥିଲା । ଗୋଦାବରୀ ନଦୀ ପୁଣି ଓଡ଼ିଶାର ଦକ୍ଷିଣ ସୀମା ହେଲା ।

କେତେକ ବର୍ଷ ପରେ ଚନ୍ଦ୍ରଗିରି ଓ ବାହମନୀ ରାଜ୍ୟମାନଙ୍କରେ ଗୃହବିବାଦ ହେଲା । ଏହି ସୁଯୋଗରେ ପୁରୁଷୋତ୍ତମ ପୁଣି ଦକ୍ଷିଣକୁ ଯୁଦ୍ଧଯାତ୍ରା କରି ଗୋଦାବରୀ ଓ କୃଷ୍ଣାନଦୀ ମଧ୍ୟବର୍ତ୍ତୀ ଅଞ୍ଚଳ ଅଧିକାର କରିନେଲେ ।

ପୁରୁଷୋତ୍ତମ ଦେବଙ୍କ ପରେ ତାଙ୍କ ପୁତ୍ର ପ୍ରତାପରୁଦ୍ର ଦେବ ରାଜା ହେଲେ । ସେ ୧୪୯୭ରୁ ୧୫୨୯ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ ।

ଏତିବେଳେ ବିଜୟନଗରର ରାଜା ନରସିଂହ ଶାଳୁବଙ୍କ ମୃତ୍ୟୁ ଘଟିଥିଲା । ତାଙ୍କ ମନ୍ତ୍ରୀ ନରେଶ ନାୟକ ସିଂହାସନ ଅଧିକାର କରି ତୁଳୁବ ବଂଶ ସ୍ଥାପନ କରିଥିଲେ । ୧୫୦୯ରେ କୃଷ୍ଣଦେବ ରାୟ ବିଜୟନଗରର ସମ୍ରାଟ୍ ହେଲେ । ସେ ବିଜୟ ନଗରର ସର୍ବଶ୍ରେଷ୍ଠ ସମ୍ରାଟ୍ ଏବଂ ସର୍ବଗୁଣସମ୍ପନ୍ନ ଥିଲେ ।

ବିଜୟନଗରର ରାଜା ପ୍ରତାପରୁଦ୍ରଙ୍କ ରାଜ୍ୟ ଆକ୍ରମଣ କରି ରାଜମାହେନ୍ଦ୍ରୀ ପର୍ଯ୍ୟନ୍ତ ସମଗ୍ର ଅଞ୍ଚଳ ଦଖଲ କରିନେଲେ । ପ୍ରତାପରୁଦ୍ର ଆକ୍ରମଣର ପ୍ରତିରୋଧ କରିବା ନିମନ୍ତେ ସସୈନ୍ୟ ଦକ୍ଷିଣକୁ ଯାତ୍ରାକଲେ ।

ସୁଲତାନ ଅଲ୍ଲାଉଦ୍ଦିନ ହୋସେନ ସାହ ୧୪୯୩ରେ ବଙ୍ଗଳାର ଗାଦିରେ ବସିଲେ । ତାଙ୍କ ସେନାପତି ଇସମାଇଲ ଗାଜି ପ୍ରତାପରୁଦ୍ରଙ୍କ ଅନୁପସ୍ଥିତିରେ ୧୫୦୯ରେ ଓଡ଼ିଶା ଆକ୍ରମଣ କଲେ । ସେ ଓଡ଼ିଶାର ଦେଉଳମାନ ଭାଙ୍ଗି ସହରଆଡ଼େ ଲୁଣ୍ଠନ ଓ ଅତ୍ୟାଚାର ଆରମ୍ଭ କଲେ । ପୁରୀ ପର୍ଯ୍ୟନ୍ତ ଯେତେବେଳେ ସେ ପହଞ୍ଚିଲେ, ପଣ୍ଡାମାନେ ଜଗନ୍ନାଥଙ୍କୁ ନେଇ ଚିଲିକା କୂଳରେ ଚଡ଼େଇ ଗୁହାରେ ଲୁଚାଇ ରଖିଲେ ।

ପ୍ରତାପରୁଦ୍ରଙ୍କ ଅବସ୍ଥା ବଡ଼ ବିଷମ ମନେ ହେଲା । ଦୁଇ ବିପରୀତ ଦିଗରେ ଦୁଇ ପ୍ରବଳ ଶତ୍ରୁ । ଓଡ଼ିଶା ଆକ୍ରମଣ ଓ ଗୃହ ଭିତରେ ଶତ୍ରୁ ପଶିଥିବା ସମ୍ବାଦ ପାଇ ସେ ବିବ୍ରତ ହୋଇ ପଡ଼ିଲେ ।

ପ୍ରତାପରୁଦ୍ର ମନେକଲେ, ଦକ୍ଷିଣର ବିଜୟନଗରର ସଙ୍ଗେ ଯୁଦ୍ଧ ଛାଡ଼ି ଉତ୍ତରର ଶତ୍ରୁଙ୍କୁ ପ୍ରଥମେ ଘର ଭିତରୁ ତଡ଼ିବାକୁ ହେବ । ସେ ତରତର ହୋଇ ବିଜୟନଗରର ସଙ୍ଗେ ସନ୍ଧି କଲେ ଏବଂ ରାଜାଙ୍କ ହସ୍ତରେ ନିଜ କନ୍ୟାକୁ ସମର୍ପଣ କରି ତାଙ୍କୁ ଦକ୍ଷିଣାଞ୍ଚଳ ଛାଡ଼ିଦେଲେ । ଗୋଦାବରୀ ଓଡ଼ିଶାର ଦକ୍ଷିଣ ସୀମା ହେଲା ।

ପ୍ରତାପରୁଦ୍ର ଦକ୍ଷିଣରୁ ଉତ୍ତରକୁ କ୍ଷିପ୍ର ବେଗରେ ଅଗ୍ରସର ହେଲେ । ସେ ଇସମାଇଲଙ୍କୁ ବଙ୍ଗଳା ପର୍ଯ୍ୟନ୍ତ ଖେଦିନେଲେ । ଇସମାଇଲ ମନ୍ଦାରଣ ଦୁର୍ଗରେ ଆଶ୍ରୟ ନେଲେ । ପ୍ରତାପରୁଦ୍ର ସେହି ଦୁର୍ଗ ଅବରୋଧ କଲେ । କିନ୍ତୁ ଏତେବେଳେ ତାଙ୍କ ସେନାପତି ଗୋବିନ୍ଦ ବିଦ୍ୟାଧର ଓଡ଼ିଶାର ଶତ୍ରୁ ହେଲେ । ସେ ବିଶ୍ୱାସଘାତକତା କରି ଶତ୍ରୁ ସଙ୍ଗେ ମିଶିଗଲେ । ସୈନ୍ୟମାନେ ତାଙ୍କ ବିପକ୍ଷରେ ଯିବାରୁ ପ୍ରତାପରୁଦ୍ର ବାଧ୍ୟ ହୋଇ ରାଜଧାନୀକୁ ଫେରି ଆସିଲେ ।

ଏହି ସମୟରେ ନବଦ୍ୱୀପ ବା ବଙ୍ଗଳାର ନଦିଆ ସଂସ୍କୃତ ଶିକ୍ଷାର ଏକ ପ୍ରଧାନ କେନ୍ଦ୍ର ଥିଲା । କପିଳେନ୍ଦ୍ରଦେବଙ୍କ ରାଜତ୍ୱରେ ବାଲେଶ୍ୱର ଜିଲ୍ଲାର ଏକ ବ୍ରାହ୍ମଣ ଯାଇ ନବଦ୍ୱୀପରେ ବାସ କଲେ । ଏହି ବ୍ରାହ୍ମଣଙ୍କ ପୁତ୍ର

ଜଗନ୍ନାଥ ମିଶ୍ର । ଜଗନ୍ନାଥ ଜଣେ ପ୍ରସିଦ୍ଧ ସଂସ୍କୃତ ପଣ୍ଡିତ ଥିଲେ । ତାଙ୍କ ପତ୍ନୀ ଶଚୀ ଦେବୀ ।

ଏହି ବ୍ରାହ୍ମଣ ଦମ୍ପତିଙ୍କ ପୁତ୍ର ଶ୍ରୀଚୈତନ୍ୟ ୧୪୮୬ ଖ୍ରୀଷ୍ଟାବ୍ଦର ଫାଲ୍‌ଗୁନ ପୂର୍ଣ୍ଣିମାଦିନ ଜନ୍ମଗ୍ରହଣ କରିଥିଲେ । ତାଙ୍କ ଡାକ ନାମ ଗୌରାଙ୍ଗ ଓ ନିମାଇ । ନିମାଇ ପିଲାଦିନେ ଭଲପାଠ ପଢୁଥିଲେ ଏବଂ ପରବର୍ତ୍ତୀ କାଳରେ ଜଣେ ପ୍ରତିଭାଶାଳୀ ବିଦ୍ୱାନ୍ ହୋଇଥିଲେ ।

ଚୈତନ୍ୟଙ୍କ ପିଲାଦିନେ ପିତାଙ୍କ ବିୟୋଗ ଘଟିଥିଲା । ମାତାଙ୍କ ଯତ୍ନରେ ଲକ୍ଷ୍ମୀ ଦେବୀଙ୍କ ସଙ୍ଗେ ତାଙ୍କର ବିବାହକ୍ରିୟା ସମ୍ପନ୍ନ ହୋଇଥିଲା ।

ଚୈତନ୍ୟ ପିଲାଦିନୁ ରାଧାକୃଷ୍ଣ ଭକ୍ତ ଥିଲେ ଏବଂ ରାଧାକୃଷ୍ଣ ପ୍ରେମରେ ମୁଗ୍‌ଧ ଥିଲେ । ତାଙ୍କର ସନ୍ନ୍ୟାସୀ ହେବାର ସଙ୍କଳ୍ପ ଅନେକ ଦିନ ପର୍ଯ୍ୟନ୍ତ ମାଆଙ୍କ ଅନୁରୋଧରେ ବାଧା ପାଇଥିଲା । ଶେଷରେ ଲକ୍ଷ୍ମୀଙ୍କ ବିୟୋଗ ଘଟିଲା ଏବଂ ୨୪ ବର୍ଷ ବୟସରେ ଶ୍ରୀଚୈତନ୍ୟ ଗୃହତ୍ୟାଗୀ ହେଲେ । ସନ୍ନ୍ୟାସୀ ହୋଇ ସେ ପୁରୀକୁ ପ୍ରସ୍ଥାନ କଲେ ।

ଶ୍ରୀ ଚୈତନ୍ୟ ପୁରୀରେ ବୈଷ୍ଣବ ଧର୍ମର ଭକ୍ତିମାର୍ଗ ପ୍ରଚାର କରି ୪୮ ବର୍ଷ ବୟସରେ ସେହି ପୁରୀଧାମରେ ଦେହତ୍ୟାଗ କରିଥିଲେ ।

ପୁରୀର ରାମାନୁଜ ମଠର ସ୍ଥାପକ ରାମାନୁଜ ପୁରୀରେ ବୈଷ୍ଣବ ଧର୍ମର ଜଣେ ପ୍ରଧାନ ପ୍ରବର୍ତ୍ତକ । ଚୈତନ୍ୟଙ୍କ ପ୍ରଚାର ଫଳରେ ତାହାଁର ଭକ୍ତି ଓ ପ୍ରେମମାର୍ଗ ପୁରୀରେ ପ୍ରବଳ ହୋଇଥିଲା ଏବଂ ସମଗ୍ର ଓଡ଼ିଶାରେ କ୍ରମେ ବ୍ୟାପିଲେ । ଓଡ଼ିଆ ଓ ବଙ୍ଗଳା ଭାଷାରେ ସେହି ଧର୍ମର ଅସଂଖ୍ୟ ପୁସ୍ତକ ଲେଖା ହୋଇଥିଲା । ବୈଷ୍ଣବ ସାହିତ୍ୟ ଦ୍ୱାରା ବିଦ୍ୟାର ବିଶେଷ ଉନ୍ନତି ହୋଇଥିଲା ଏବଂ ଜନତା ଉପରେ ତାହାଁର ଅତ୍ୟନ୍ତ ପ୍ରଭାବ ପଡ଼ିଥିଲା । ଶ୍ରୀଚୈତନ୍ୟଙ୍କ ଶିକ୍ଷା ହେତୁ ଜନତା କାମିନୀ ଓ କାଞ୍ଚନ ତ୍ୟାଗୀ ହୋଇ ପଡ଼ିଥିଲେ ।

ପୁରୀର ପଞ୍ଚସଖା, ଶ୍ରୀ ଜଗନ୍ନାଥ ଦାସ, ଶ୍ରୀ ବଳରାମ ଦାସ, ଶ୍ରୀ ଅଚ୍ୟୁତାନନ୍ଦ ଦାସ, ଶ୍ରୀ ଯଶୋବନ୍ତ ଦାସ ଓ ଶ୍ରୀ ଅନନ୍ତ ଦାସ ଚୈତନ୍ୟଙ୍କ ପ୍ରଧାନ ସଖା ଓ ପୃଷ୍ଠପୋଷକ ଥିଲେ । ଏମାନେ ଭାଗବତ, ରାମାୟଣ ପ୍ରଭୃତି ଗ୍ରନ୍ଥ ଲେଖିଥିଲେ ।

ଏହି ବିଦ୍ୱାନ୍ ଭକ୍ତମାନଙ୍କ ପ୍ରଭାବରେ ଓଡ଼ିଶାର ରାଜନୈତିକ, ସାମାଜିକ ଓ ଧର୍ମ ଜୀବନରେ ଏକ ବିପ୍ଳବ ଉପସ୍ଥିତ ହୋଇଥିଲା ଏବଂ ଦେଶର ଇତିହାସ ଏକ ଭିନ୍ନ ଦିଗରେ ଗତି କରିଲା ।

ଶ୍ରୀ ଚୈତନ୍ୟ ଓଡ଼ିଶାର ଅନେକ ପ୍ରଧାନ ରାଜକର୍ମଚାରୀଙ୍କୁ ପ୍ରେମଭକ୍ତି ଧର୍ମରେ ଦୀକ୍ଷିତ କରିଥିଲେ । ପ୍ରତାପରୁଦ୍ରଙ୍କ ମନ୍ତ୍ରୀ ରାୟ ରାମାନନ୍ଦ ସେମାନଙ୍କ ମଧ୍ୟରେ ପ୍ରଧାନ । ପ୍ରତାପରୁଦ୍ର ନିଜେ ସ୍ୱଭାବତଃ କୋମଳହୃଦୟ ଓ ଭକ୍ତିପ୍ରବଣ ଥିଲେ । ସେ ମନ୍ତ୍ରୀ ଓ ଚୈତନ୍ୟଙ୍କ ଦ୍ୱାରା ପ୍ରଭାବିତ ହୋଇ ଶେଷରେ ଭକ୍ତିଧର୍ମ ଗ୍ରହଣ କରିଥିଲେ । ଏହାର ପରିଣାମ ଦେଶର ରାଜନୀତି କ୍ଷେତ୍ରରେ ଭୂତିଜନକ ହୋଇ ନଥିଲା ।

ଥରେ ପ୍ରତାପରୁଦ୍ର ବଙ୍ଗଳା ଆକ୍ରମଣ ଲାଗି ଶ୍ରୀ ଚୈତନ୍ୟଙ୍କ ପରାମର୍ଶ ଲୋଡ଼ିଥିଲେ । ଶ୍ରୀ ଚୈତନ୍ୟ କହିଲେ "ଯୁଦ୍ଧରେ ଦେଶର ଭୟଙ୍କର କ୍ଷତି ହୁଏ ।" ଶ୍ରୀ ଚୈତନ୍ୟ ରାଜାଙ୍କୁ ସର୍ବଦା କୃଷ୍ଣନାମ ନେବାକୁ ଏବଂ କୃଷ୍ଣଙ୍କଠାରେ ମନ କେବଳ ଆସକ୍ତ ରଖିବାକୁ ଉପଦେଶ ଦେଉଥିଲେ । ରାଜ୍ୟର ଦୁଇ ଜଣ ପ୍ରଧାନ ଶାସକ ରାୟ ରାମାନନ୍ଦ ଓ ଗୋପୀନାଥ ବଡ଼ଜେନା ଶାସନରେ ଯେଉଁ ଶିଥିଳତା ଦେଖାଇଲେ, ତାହାର କୌଣସି ପ୍ରତିକାର ହୋଇ ନଥିଲା । ସେନାପତି ଗୋବିନ୍ଦ ବିଦ୍ୟାଧର ବିଶ୍ୱାସ ଘାତକତା କରି ମଧ୍ୟ ପଦଚ୍ୟୁତ ହୋଇ ନଥିଲେ । ଏସବୁ କାର୍ଯ୍ୟ ରାଜ୍ୟର ବିଶେଷ ଅମଙ୍ଗଳ ଘଟାଇଲା ।

ଶ୍ରୀଚୈତନ୍ୟ ୧୫୩୪ରେ ଦେହତ୍ୟାଗ କଲେ । ତତ୍ପୂର୍ବରୁ ପ୍ରତାପରୁଦ୍ର ନିଜ ପୁତ୍ର ଉପରେ ରାଜକାର୍ଯ୍ୟର ବୁଝାମଣା ଭାର ଦେଇ ଏକପ୍ରକାର ସନ୍ୟାସ ଜୀବନ ଯାପନ କରୁଥିଲେ ।

ପ୍ରତାପରୁଦ୍ର ୧୫୪୦ରେ ଇହଲୀଳା ଶେଷ କରିଥିଲେ । ତାଙ୍କ ମୃତ୍ୟୁ ପରେ ବିଶ୍ୱାସଘାତକ ସେନାପତି ଗୋବିନ୍ଦ ବିଦ୍ୟାଧର ରାଜନିର୍ମାତା ବେଶ ଧରିଲେ ଏବଂ ଜଣକ ପରେ ଜଣେ କରି ପ୍ରତାପରୁଦ୍ରଙ୍କ ପୁଅମାନଙ୍କୁ ସିଂହାସନରେ ବସାଇ ସେମାନଙ୍କୁ ହତ୍ୟା କରିବାକୁ ଲାଗିଲେ । ଶେଷରେ ୧୫୪୧ରେ ଗୋବିନ୍ଦ ନିଜେ ସିଂହାସନରେ ବସି ଓଡ଼ିଶାରେ ଭୋଇ ବଂଶ

ସ୍ଥାପନ କଲେ । ଓଡ଼ିଶାର ଗୌରବତ ଇତିହାସରେ ଏକ ଅନ୍ଧାର ଯୁଗରେ ଉପକ୍ରମ ହେଲା ।

## ( ୫ )
## ମୁକୁନ୍ଦଦେବ

ଗୋବିନ୍ଦ ବିଦ୍ୟାଧର ଓ ତାଙ୍କ ଦୁଇ ପୁଅ ଏକାଦିକ୍ରମେ ୧୮ ବର୍ଷ ଓଡିଶାର ଗଜପତି ହେଲେ । ଶେଷ ରାଜାଙ୍କୁ ହତ୍ୟାକରି ତାଙ୍କ ସେନାପତି ମୁକୁନ୍ଦଦେବ ୧୭୫୯ରେ ଗଜପତି ହେଲେ ।

ତେଲେଙ୍ଗା ମୁକୁନ୍ଦଦେବ ବା ମୁକୁନ୍ଦ ହରିଚନ୍ଦନ ଦକ୍ଷିଣରୁ ଆସି ପ୍ରତାପରୁଦ୍ରଙ୍କ ସେନାରେ ପାଇକ କାମ କରୁଥିଲେ । ସୈନିକ ରୂପେ ମୁକୁନ୍ଦ ନିଜ ପ୍ରବୀଣତାର ପ୍ରମାଣ ଦେଇ ପ୍ରତାପରୁଦ୍ରଙ୍କର ଜଣେ ସେନାପତି ହୋଇଥିଲେ । ଗୋବିନ୍ଦ ବିଦ୍ୟାଧର ତାଙ୍କୁ କଟକର ଶାସନକର୍ତ୍ତା ରୂପେ ନିଯୁକ୍ତ କରିଥିଲେ । ଏହା ପରେ ମୁକୁନ୍ଦଦେବ ଓଡ଼ିଶାର ସିଂହାସନ ଅଧିକାର କଲେ ।

ମୁକୁନ୍ଦଦେବ ରାଜା ହୋଇ ବାରବାଟୀ ଦୁର୍ଗ ନିର୍ମାଣ କରିଥିଲେ । ଶ୍ରୀ ଅଚ୍ୟୁତାନନ୍ଦ ଦାସ ଗରୁଡ଼ ଗୀତାରେ ଲେଖିଛନ୍ତି:—"ତେଲେଙ୍ଗା ମୁକୁନ୍ଦଦେବ ବୋଲି ରାଜା ଉତ୍କଳ ଦେଶରେ ହେବ, ବାରବାଟୀ କିଲ୍ଲା ସେହି ତୋଳାଇବ କାରଣ ସେ ରଖିଯିବ ।"

୧୨୦୨ ଖ୍ରୀଷ୍ଟାବ୍ଦରେ ଗଙ୍ଗବଂଶୀୟ ରାଜା ଅନଙ୍ଗଭୀମ ଦେବ ବାରବାଟୀରେ ଗୋଟିଏ କିଲ୍ଲା ନିର୍ମାଣ କରି ଏକ ନଗର ବସାଇଥିଲେ । ନଗର ସହିତ ଦୁର୍ଗର ନାମ ବାରବାଟୀ କଟକ ହୋଇଥିଲା । ମହାନଦୀ ଓ କାଠଯୋଡ଼ୀ ମଧ୍ୟରେ ଏହି ଦୁର୍ଗ ଓ କଟକ ସହର ରହିଥିଲା ।

ମୁକୁନ୍ଦଦେବ ବାରବାଟୀ ଦୁର୍ଗକୁ ସୁଦୃଢ଼ ଓ ନୂଆ କରି ନିର୍ମାଣ କଲେ । ଦୁର୍ଗଟି ଠିକ୍ ମହାନଦୀ କୂଳରେ ବାରବାଟୀ ଜମି ଉପରେ ନିର୍ମିତ ହୋଇଥିଲା । ଏହାର ତିନ ଦିଗରେ ମହାନଦୀ ଓ କାଠଯୋଡ଼ୀ ଘେରି ରହିଥିବାରୁ ବହିର୍ଦ୍ଦେଶରୁ ଶତ୍ରୁର ଆକ୍ରମଣ କଷ୍ଟକର ଥିଲା ।

ଦୁର୍ଗର ଚତୁର୍ଦ୍ଦିଗରେ ୨୨୦ ଫୁଟ ପ୍ରସ୍ଥବିଶିଷ୍ଟ ଏକ ଘେର ପରିଖା ଭିଦ୍ୟଥିଲା । ପରିଖାର ଅବଶେଷ ଏ ପର୍ଯ୍ୟନ୍ତ ଦେଖାଯାଏ । ପରିଖାକୁ ଲାଗି ଏକ ବୃହତ୍ ପଥର ପାଚେରୀ ଦୁର୍ଗକୁ ଚତୁର୍ଦ୍ଦିଗରେ ବେଷ୍ଟନ କରିଥିଲା । ପାଚେରୀଟି କେବଳ ପ୍ରବେଶଦ୍ୱାର ବ୍ୟତୀତ ଅନ୍ୟ ସବୁ ଧ୍ୱଂସ ପାଇଛି ।

ଦୁର୍ଗର ଦୈର୍ଘ୍ୟ ୨୧୫୦ ଫୁଟ ଓ ପ୍ରସ୍ଥ ୧୮୦୦ ଫୁଟ । ପାଚେରୀ ଭିତରେ ଦୁର୍ଗର କ୍ଷେତ୍ରଫଳ ୯୦ ଏକର ।

ଦୁର୍ଗ ମଧ୍ୟରେ ମୁକୁନ୍ଦଦେବ ଏକ ସୁନ୍ଦର ବିରାଟ ରାଜଭବନ ନିର୍ମାଣ କରିଥିଲେ । ଏହି ଭବନ ନଅ ତାଲା ବିଶିଷ୍ଟ ଥିବାର ଜଣାଯାଏ । ପ୍ରଥମ ତାଲାରେ ହାତୀ, ଘୋଡ଼ା, ଓଟ ଆଦି ପ୍ରାଣୀମାନଙ୍କୁ ରଖା ଯାଉଥିଲା । ଦ୍ୱିତୀୟ ତାଲାରେ ଯୁଦ୍ଧୋପକରଣ, ଆଗ୍ନେୟାସ୍ତ୍ର, ଗୋଳାବାରୁଦ ପ୍ରଭୃତି ରହୁଥିଲା ଏବଂ ପ୍ରହରୀମାନେ ତାକୁ ଜଗି ରହୁଥିଲେ । ତୃତୀୟ ତାଲାରେ ରାଜାଙ୍କ ଭୃତ୍ୟ ଅନୁଚରମାନେ ଏବଂ ଚତୁର୍ଥ ତାଲାରେ ରାଜାଙ୍କ ଶିଳ୍ପୀ କାରିଗର ଆଦି ଆବଶ୍ୟକୀୟ ସାହାଯ୍ୟକାରୀମାନେ ବାସ କରୁଥିଲେ । ପଞ୍ଚମ ତାଲା ଲୋକଙ୍କ ରନ୍ଧନଶାଳା ଥିଲା । ଷଷ୍ଠ ତାଲା ରାଜାଙ୍କ ଅତିଥି, ଆଗନ୍ତୁକ, ଭଦ୍ରବ୍ୟକ୍ତିମାନଙ୍କ ନିମନ୍ତେ ନିର୍ଦ୍ଦିଷ୍ଟ ରହିଥିଲା । ସେଥିରେ ଦରବାର ମଧ୍ୟ ଅନୁଷ୍ଠିତ ହେଉଥିଲା । ସପ୍ତମ ତାଲାରେ ରାଷ୍ଟ୍ରର ଗୋପନୀୟ ମନ୍ତ୍ରଣାଗାର ଏବଂ ପାରିବାରିକ ବିଶୃଙ୍ଖଳତାର କାର୍ଯ୍ୟ ନିଷ୍ପତ୍ତି ହେଉଥିଲା । ଅନ୍ତଃପୁରର ମହିଳାମାନେ ଅଷ୍ଟମ ତାଲାରେ ବାସ କରୁଥିଲେ । ନିଜେ ରାଜା ଓ ରାଣୀ ନବମ ବା ସର୍ବୋଚ୍ଚ ତାଲାରେ ରହୁଥିଲେ ଏବଂ ଶୋଉଥିଲେ ।

ଏ ପ୍ରକାର ନବତଳ ପ୍ରାସାଦ ଅଧିକ କାଳ ଉଧାଇବା ସମ୍ଭବ ହେଉ ନାହିଁ । ଅଳ୍ପଦିନ ମଧ୍ୟରେ ଏହା ଏକ ସ୍ତୂପରେ ପରିଣତ ହୋଇଥିଲା ।

ମୁକୁନ୍ଦଦେବଙ୍କ ଅଭିଷେକର ଅନତିକାଳ ପରେ ୧୫୬୦ରେ ବଙ୍ଗଳାର ନବାବ ଗିୟାସୁଦ୍ଦିନ ଜଲାଲ ସାହାସୁର ଓଡ଼ିଶା ଆକ୍ରମଣ କରି ଯାଜପୁର ପର୍ଯ୍ୟନ୍ତ ଅଗ୍ରସର ହେଲେ । ମୁକୁନ୍ଦଦେବ ଦକ୍ଷ ସେନାପତି ଓ ବୀର ଯୋଦ୍ଧା ଥିଲେ । ସେ ତାଙ୍କୁ ଗୋଡ଼ାଇ ଗୋଡ଼ାଇ ହୁଗୁଳୀ ନଦୀ ପର୍ଯ୍ୟନ୍ତ ନେଲେ । ହୁଗୁଳୀ ପର୍ଯ୍ୟନ୍ତ ଭୂଭାଗ ତାଙ୍କ ଅଧିକାରକୁ ଆସିଲା । ହୁଗୁଳୀ ନଦୀର କୂଳ ଉପରେ ମୁକୁନ୍ଦଦେବ ତ୍ରିବେଣୀଘାଟ ନିର୍ମାଣ କଲେ । ଏହା ଏବେ

ଏକ ପବିତ୍ର ତୀର୍ଥ ରୂପେ ପରିଗଣିତ । ସେ ଗଙ୍ଗାରୁ ଏକ ଜଳଧାର ଆଣି ମହାନଦୀରେ ପକାଇବାର କଳ୍ପନା ମଧ୍ୟ କରିଥିଲେ ।

ବଙ୍ଗଳାର ସୁରବଂଶୀୟ ଶେଷ ନବାବ ଇବ୍ରାହିମଙ୍କୁ ତଡ଼ିଦେଇ ବିହାରର ଶାସନକର୍ତ୍ତା ସୁଲେମାନ କରରାଣୀ ବଙ୍ଗଳା ଅଧିକାର କରିଥିଲେ (୧୫୬୩) । ଇବ୍ରାହିମ ଯୁଦ୍ଧରେ ପରାସ୍ତ ହୋଇ ଓଡ଼ିଶାରେ ମୁକୁନ୍ଦଦେବଙ୍କ ଆଶ୍ରୟ ଗ୍ରହଣ କଲେ । ଏଥିରେ କରରାଣୀ ବିରକ୍ତ ହେଲେ ଏବଂ ଓଡ଼ିଶା ସଙ୍ଗେ ଶତ୍ରୁତା କଲେ ।

ତେବେଣେ ମୋଗଲ ସମ୍ରାଟ ଆକବର ବଙ୍ଗଳା ଓ ଓଡ଼ିଶା ଉଭୟ ଜୟ କରିବାର କଳ୍ପନା କରୁଥିଲେ ଏବଂ ଗୋଟିକ ବିପକ୍ଷରେ ଅନ୍ୟକୁ ଲଗାଇବାର ପାଲ୍ ଖେଳୁଥିଲେ । ସେ ଦେଖିଲେ ମୁକୁନ୍ଦଦେବ ଟାଣ ଅଛନ୍ତି, ତେଣୁ ତାଙ୍କ ଦରବାରକୁ ଦୂତ ପଠାଇ ତାଙ୍କ ସଙ୍ଗେ ବନ୍ଧୁତା ସ୍ଥାପନ କଲେ । ଏହି ଦୂତ ଓଡ଼ିଶାରେ ଚାରିମାସ ରହିଲା ।

ଏହି ସମୟରେ ଆକବର ଓ ସୁଲେମାନଙ୍କ ମଧ୍ୟରେ ସଂଘର୍ଷ ଆରମ୍ଭ ହୋଇ ଯାଇଥିଲା । ସୁଲେମାନ ଦେଖିଲେ, ଆକବର ଚିତୋର ଯୁଦ୍ଧରେ ବ୍ୟସ୍ତ ଅଛନ୍ତି । ସେ ସୁବିଧା ଦେଖି ମୁକୁନ୍ଦଦେବଙ୍କୁ ଆକ୍ରମଣ କଲେ । ମୁକୁନ୍ଦଦେବ ଆକବରଙ୍କୁ ସାହାଯ୍ୟ ନିମନ୍ତେ ସମ୍ବାଦ ଦେଇ ମଧ୍ୟ କିଛି ଉତ୍ତର ପାଇଲେ ନାହିଁ ।

ସୁଲେମାନ କରରାଣୀ ୧୫୬୭ରେ ଓଡ଼ିଶା ଆକ୍ରମଣ କଲେ । ସେହି ଆକ୍ରମଣର ଆଶଙ୍କା କରି ମୁକୁନ୍ଦଦେବ ଆଗରୁ ଯାଇ ହୁଗୁଳୀ ନଦୀ କୂଳରେ ଶିବିର ସ୍ଥାପନ କଲେ ।

ସୁଲେମାନ ନିଜ ସେନାକୁ ଦୁଇ ଦଳରେ ବିଭକ୍ତ କଲେ । ନିଜେ ଦଳେ ସୈନ୍ୟ ନେଇ ମୁକୁନ୍ଦଦେବଙ୍କ ସଙ୍ଗେ ଯୁଦ୍ଧ କରିବା ପାଇଁ ବାହାରିଲେ । ଅନ୍ୟ ସୈନ୍ୟ ଦଳ ତାଙ୍କ ପୁଅ ବାୟଜିଦ ଓ ଜୋଇଁ କଳା-ପାହାଡ଼ଙ୍କ ସେନାପତିତ୍ୱରେ ମୟୂରଭଞ୍ଜ ଓ କେନ୍ଦୁଝର ବାଟେ ଜଙ୍ଗଲ ଭିତର ଦେଇ କଟକ ଆକ୍ରମଣ କରିବାକୁ ଆସିଲେ ।

ବାୟଜିଦ ଓ କଳାପାହାଡ଼ କଟକ ଅବରୋଧ କଲେ । ଦୁର୍ଗର ସେନାପତି କୋଳ ସାମନ୍ତସିଂହାର ଦୁର୍ଗ ରକ୍ଷା କରିବାକୁ ଯାଇ ନିହତ

ହେଲେ । ବାରବାଟୀ ଅବରୋଧର ସମ୍ବାଦ ପାଇ ମୁକୁନ୍ଦଦେବ ସୁଲେମାନଙ୍କ ସଙ୍ଗେ ଯୁଦ୍ଧ ଛାଡ଼ି ରାଜଧାନୀ ଆଡ଼କୁ ପ୍ରତ୍ୟାବର୍ତ୍ତନ କଲେ ।

ଏଣେ ବାଜଦ ଓ କଳାପାହାଡ଼ ଦୁର୍ଗ ଅଧିକାର କରି ମୁକୁନ୍ଦ-ଦେବଙ୍କୁ ଭେଟିବା ପାଇଁ ଗଲେ । ସାରଙ୍ଗଗଡ଼ର ସାମନ୍ତ ରାମଚନ୍ଦ୍ର ଭଞ୍ଜ ସେମାନଙ୍କ ସଙ୍ଗେ ଯୋଗ ଦେଲେ । ସେଆଡ଼ୁ ସୁଲେମାନ ମୁକୁନ୍ଦଦେବଙ୍କ ପଶ୍ଚାଦ୍ଧାବନ କଲେ ।

ବାଲେଶ୍ୱର ନିକଟ ଧାମନଗରଠାରେ ଭୀଷଣ ଯୁଦ୍ଧ ହେଲା । ମୁକୁନ୍ଦଦେବ ଓ ରାମଚନ୍ଦ୍ର ଭଞ୍ଜ ଉଭୟେ ନିହତ ହୋଇଥିଲେ ।

ସୁଲେମାନ ୧୫୬୮ରେ ଓଡ଼ିଶା ଅଧିକାର କଲେ । ମୁକୁନ୍ଦଦେବଙ୍କ ସହିତ ଓଡ଼ିଶାର ସ୍ୱାଧୀନତା ଲୋପ ପାଇଲା । ସୁଲେମାନଙ୍କ ପୁତ୍ର ଦାଉଦଙ୍କ ହାତରୁ ମୋଗଲ ସମ୍ରାଟ୍ ଆକବର କିଛିଦିନ ପରେ ବଙ୍ଗ, ବିହାର ଓ ଓଡ଼ିଶା ଜିଣି ନେଲେ ।

## ( ୭ )
## ରମଣୀୟ ଦେବ

ମହମ୍ମଦ ଘୋରୀ ତରୋରି ଯୁଦ୍ଧରେ ପୃଥ୍ୱୀରାଜଙ୍କୁ ହତ୍ୟା କରି ଦିଲ୍ଲୀରେ ସିଂହାସନ ଅଧିକାର କଲେ । ପୃଥ୍ୱୀରାଜଙ୍କ ଜ୍ଞାତିମାନେ ରଣସମ୍ଭର ବା ଆଜମିର ଶାସନ କରି ରହିଲେ ।

ମୁସଲମାନଙ୍କ ଅତ୍ୟାଚାରରେ ସମ୍ଭର ବା ଗଡ଼ସମ୍ଭରର ହମୀର ଦେବ ନିହତ ହୋଇଥିଲେ । ତାଙ୍କ ରାଣୀମାନେ ଜୋହର ଅଗ୍ନିରେ ପ୍ରବେଶ କରି ଆତ୍ମହତ୍ୟା କରିଥିଲେ । ଜନୈକା ରାଣୀ ଆଶାବତୀ ଅନ୍ତଃସତ୍ତ୍ୱା ଥିବାରୁ କେତେକ ଅନୁଚରଙ୍କ ସଙ୍ଗେ ବନ୍ୟ ଅରଣ୍ୟାନୀ ପଥରେ ଆସି ସମ୍ବଲପୁର କୋଶଳରେ ପହଞ୍ଚିଲେ ଏବଂ ପାଟଣା ରାଜ୍ୟର ଜଣେ ମନ୍ତ୍ରୀଙ୍କ ଘରେ ଆଶ୍ରୟ ନେଲେ ।

ଏତେବେଳେ କୋଶଳ ଦେଶରେ ରଣସିଂହ ନାମରେ ଜଣେ ରାଜା ଥିଲେ । ତାଙ୍କ ସଙ୍ଗେ ତାଙ୍କ ଭାଇ ତେଜସିଂହ କଳହକରି ରାଜଧାନୀ ତ୍ୟାଗ କଲେ । ସେ ଭାଇଙ୍କ ରାଜ୍ୟରୁ ଏକ ଅଂଶ ଛିନ୍ନ କରିନେଇ ପତନ ବା ପାଟଣା ନାମରେ ଏକ ନୂଆ ରାଜଧାନୀ ସ୍ଥାପନ କଲେ । ପାଟଣାରେ ଶିଶୁପାଳ ନାମରେ ଏକ ଦୁର୍ଗ ନିର୍ମାଣ କରିଥିଲେ ।

କାଳକ୍ରମେ ତେଜସିଂହଙ୍କ ବଂଶରେ କେହି ଉତ୍ତରାଧିକାରୀ ନ ରହିବାରୁ ତାଙ୍କର ଆଠଜଣ ମନ୍ତ୍ରୀ ରାଜ୍ୟ ଶାସନ କଲେ । ଏହାକୁ ଅଷ୍ଟ ମନ୍ତ୍ରୀ ଶାସନ ବା ଆଠମଲିକ ଶାସନ କହନ୍ତି । ଚନ୍ଦ୍ରଧର ପୁରୋହିତ ଏହି ଆଠମଲ୍ଲିକଙ୍କର ପ୍ରଧାନ ଥିଲେ । ଆଶାବତୀ ଚନ୍ଦ୍ରଧରଙ୍କ ଘରେ ଆଶ୍ରୟ ନେଇଥିଲେ ।

ଆଶାବତୀ ଚନ୍ଦ୍ରଧରଙ୍କ ଘରେ ଏକ ସୁଲକ୍ଷଣ ପୁତ୍ର ପ୍ରସବ କଲେ । ଚନ୍ଦ୍ରଧର କ୍ଷତ୍ରିୟ ବିଧିରେ ତାଙ୍କର ଜାତକର୍ମ ସମାପନ କଲେ । ତାଙ୍କର ନିଜ ପୁଅ ନଥିବାରୁ ସେ ବାଳକକୁ ପୁଅ ପରି ପାଳନ କଲେ ଏବଂ ତାଙ୍କ ରମଣୀୟ ରୂପ ନିରୀକ୍ଷଣ କରି ତାଙ୍କୁ "ରମଣୀୟ" ନାମ ଦେଲେ । ରମଣୀୟ ପୁରୋହିତଙ୍କ ଯତ୍ନରେ ନାନା ବିଦ୍ୟା ଅଧ୍ୟୟନ କଲେ ।

ଏତେବେଳେ ଗଙ୍ଗବଂଶ ଓଡ଼ିଶାର ରାଜାସନରେ ଥିଲେ । ରତ୍ନପୁର ଓ ଓଡ଼ିଶା ମଧ୍ୟରେ ସମ୍ବଲପୁର-କୋଶଳ ନିମନ୍ତେ ଏକାଧିକ ଯୁଦ୍ଧ ହୋଇଥିଲା । ପାଟଣା କେତେବେଳେ ରତ୍ନପୁରର ଏବଂ କେତେବେଳେ ଓଡ଼ିଶାର ସାମନ୍ତ ରାଜ୍ୟ ରୂପେ ରହିଥିଲା । ହେଲେ ହେଁ ରତ୍ନପୁରର ବା ଓଡ଼ିଶାର କ୍ଷମତା ପାଟଣା ଉପରେ ବିଶେଷ କୋହଳ ଧରିଥିଲା । ଅନଙ୍ଗଭୀମଙ୍କ ରାଜତ୍ୱରେ ଶେଷ ଯୁଦ୍ଧରେ ରତ୍ନପୁର ଓ ଓଡ଼ିଶା ମଧ୍ୟରେ ସନ୍ଧି ହୋଇଥିଲା । ଉଭୟ ଶକ୍ତି ମଧ୍ୟରେ ସୌଜନ୍ୟସମ୍ପର୍କ ପ୍ରତିଷ୍ଠିତ ହୋଇଥିଲା । ସମ୍ବଲପୁର ଜିଲ୍ଲାର ଉତ୍ତର ସୀମା ବାହାରେ ମହାନଦୀ ଦୁଇ ରାଜ୍ୟ ମଧ୍ୟରେ ସୀମାରୂପେ ରହିଲା । ଛତିଶଗଡ଼ ରତ୍ନପୁର ମଧ୍ୟରେ ଏବଂ ସମ୍ବଲପୁର କୋଶଳ ଓଡ଼ିଶା ମଧ୍ୟରେ ରହିଥିଲା । (୧୧୮୯-୧୨୨୩)

ରମଣୀୟ ବା ରମାଇ ଯୌବନରେ ପଦାର୍ପଣ କଲେ । ଥରେ ଚନ୍ଦ୍ରଧରଙ୍କୁ ଜ୍ୱର ହେଲା । ପ୍ରଧାନ ମନ୍ତ୍ରୀ କାର୍ଯ୍ୟ ଚଳାଇବା ପାଇଁ ଚନ୍ଦ୍ରଧର ନିଜ ପକ୍ଷରୁ ପୁତ୍ରକୁ ପ୍ରତିନିଧି ନିଯୁକ୍ତ କଲେ ।

ରମଣୀସ୍ବ ରାଜକୋଷରୁ ଅର୍ଥ ଦେଇ ସେନାକୁ ହାତକଲେ । ମନ୍ତ୍ରୀମାନଙ୍କୁ ଭୋଜି ଦେଲେ । ମନ୍ତ୍ରୀମାନେ ରାତିରେ ଭୋଜିଘରୁ ଫେରିବା ବେଳେ ସୈନିକମାନେ ସେମାନଙ୍କୁ ପଛରୁ ଗୁଳିକରି ହତ୍ୟା କଲେ ।

ରମଣୀସ୍ବ ପାଟଣା ସିଂହାସନ ଅଧିକାର କରି ରମଣୀସ୍ବ ଦେବ ବୋଲାଇଲେ ଏବଂ ପାଟଣାରେ ଚୌହାଣ ବଂଶ ସ୍ଥାପନ କଲେ ।

ପାଟଣା ରାଜସିଂହାସନ ଅଧିକାର କରିବା ପରେ ରମଣୀସ୍ବ ଦେବ ମନ୍ତ୍ରୀ ଓ ବଳ ସଙ୍ଗରେ ନେଇ ଓଡ଼ିଶାର ତତ୍କାଳୀନ ଗଜପତି ଅନଙ୍ଗଭୀମ-ଦେବଙ୍କ ନିକଟକୁ ପ୍ରସ୍ଥାନ କଲେ । ଗଜପତିଙ୍କୁ କର ଉପହାର ସମର୍ପଣ କରି ଅଧିନାୟକ ରୂପେ ଅଭିବାଦନ କଲେ । ଅନଙ୍ଗଭୀମ ତାଙ୍କ ଗୁଣରେ ଓ ବଂଶର ପରିଚୟ ପାଇ ତାଙ୍କୁ ସାମନ୍ତ ରାଜା ରୂପେ ସ୍ୱୀକାର କଲେ ଏବଂ ହସ୍ତରେ ଏକ ଖଣ୍ଡା ସମର୍ପଣ କଲେ ।

ଅନଙ୍ଗଭୀମ ଦେବଙ୍କର ଭାନୁମତୀ ନାମ୍ନୀ ଏକ ଭ୍ରାତୃଷ୍ପୁତ୍ରୀ ଥିଲେ । ରମଣୀସ୍ବଙ୍କ ସଙ୍ଗେ ଭାନୁମତୀଙ୍କ ବିବାହ ହୋଇଥିଲା ଏବଂ ମାଙ୍ଗଳିକକୃତ୍ୟ ଅନଙ୍ଗଭୀମଙ୍କ ପ୍ରାସାଦରେ ଅନୁଷ୍ଠିତ ହୋଇଥିଲା । ଚତୁର୍ଥିକ କୃତ୍ୟ ସମାପନ ପରେ ଦମ୍ପତି ପାଟଣାକୁ ପ୍ରତ୍ୟାବର୍ତ୍ତନ କଲେ । ଚନ୍ଦ୍ରଧର ବରବଧୂଙ୍କୁ ସମାରୋହ ସହକାରେ ପାଛୋଟି ନେଲେ ।

ପାଟଣାରେ ରମଣୀସ୍ବ ଦେବଙ୍କ ଅଭିଷେକ ମହା ଆଡ଼ମ୍ବରରେ ଅନୁଷ୍ଠିତ ହେଲା । ପ୍ରଧାନମନ୍ତ୍ରୀ ଚନ୍ଦ୍ରଧର ତାଙ୍କ ମସ୍ତକରେ ରାଜତିଳକ ଅର୍ପଣ କଲେ ।

ରମଣୀସ୍ବ ପାଟଣାର ଅଧିଷ୍ଠାତ୍ରୀ ଦେବୀ ରୂପେ ପାଟଣେଶ୍ୱରୀଙ୍କ ଦେଉଳ ପ୍ରତିଷ୍ଠା କଲେ ଏବଂ ଦେଉଳକୁ ଦେଉଳ ଗାଁ, ଡ଼ଆଁଡ଼ମ୍ବର, କଲଙ୍ଗାପାଲି, ଘୁନଘୁଟିପାଲି ଓ ଉଚବାଲି ପାଞ୍ଚଖଣ୍ଡ ଗାଁ ଦେଲେ । ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ନିମନ୍ତେ ଏକ ଦେଉଳ ନିର୍ମାଣ କରିଥିଲେ । ଯାଜପୁରରୁ ବ୍ରାହ୍ମଣ ଅଣାଇ ସେମାନଙ୍କ ସକାଶେ ମାଫି ବୃତ୍ତି ଖଞ୍ଜିଦେଲେ । ଜଗନ୍ନାଥଙ୍କ ନିମନ୍ତେ ମଧ୍ୟ ବୃତ୍ତି ଖଞ୍ଜି ଦେଇଥିଲେ ।

( ୭ )

## ବଳରାମ ଦେବ

ପାଟଣାର ଦ୍ୱାଦଶ ରାଜା ରାମ ଦେବ ବା ନରସିଂହ ଦେବ ଓ ତାଙ୍କର ଭାଇ ବଳରାମ ଦେବଙ୍କ ମଧ୍ୟରେ ଅଭେଦ ପ୍ରୀତି ଥିଲା । ବଳରାମ ଦେବ ସେନାପତି ରୂପେ ରାଜାଙ୍କ ପକ୍ଷରୁ ଅନେକ ଯୁଦ୍ଧ କରିଥିଲେ ଏବଂ ଅନେକ ରାଜ୍ୟ ଜିଣିଥିଲେ ।

ଥରେ ରାତିରେ ମହାରାଣୀଙ୍କର ଭୀଷଣ ପ୍ରସବ ବେଦନା ହେଲା । ମହାରାଣୀ ଅବସନ୍ନା ହୋଇପଡ଼ିଲେ ଏବଂ ଜୀବନ ଯିବା ଉପରେ ରହିଲା । ଗଡ଼ ମଧ୍ୟରେ ଥିବା ସମସ୍ତଙ୍କର ସବୁ ଉପାୟ ବିଫଳ ହେଲା ।

ପାଟଣା ଗଡ଼କୁ ଲାଗି ମାୟାବତୀ ନାମରେ ଏକ ଖରସ୍ରୋତା ଗିରିନଦୀ ଅଛି । ନଦୀର ଅନ୍ୟ ପଟେ ବରପଦର ଗ୍ରାମରେ ଏକ ପ୍ରସବ-ବିଦ୍ୟାବିଚକ୍ଷଣା ଧାତ୍ରୀ ଥିଲା । ସମସ୍ତେ କହିଲେ ସେହି ଧାତ୍ରୀ କେବଳ ରାଣୀଙ୍କ ଜୀବନ ବଞ୍ଚାଇ ପାରିବ ।

ଶ୍ରାବଣ ମାସର ତମିସ୍ରା ରଜନୀ । ଖରସ୍ରୋତା ମାୟାବତୀ ପୂର୍ଣ୍ଣଗର୍ଭା । କୈବର୍ତ୍ତମାନେ ମଧ୍ୟ ରାତିରେ ନଦୀ ପାରି ହୋଇ ଧାତ୍ରୀକୁ ଆଣିବାକୁ ସାହସ କଲେ ନାହିଁ ।

ବଳରାମ ଦେବ ରାତିରେ ପହଁରି ପହଁରି ନଦୀ ପାରିହେଲେ ଏବଂ ଧାତ୍ରୀକୁ କାନ୍ଧରେ ଧରି ନଅରରେ ଉପସ୍ଥିତ କରାଇଲେ । ରାଣୀ ଏକ ଶୁଭକୁମାର ପ୍ରସବ କଲେ । ନରସିଂହ ଦେବ ସକାଳୁ ଜାଣିଲେ, ବଳରାମଙ୍କ ଆତ୍ମତ୍ୟାଗ ବଳରେ ପାଟଣାର ଭାବୀ ରାଜାଙ୍କ ଜନ୍ମ ହୋଇଛି ଏବଂ ରାଣୀଙ୍କ ଜୀବନ ରକ୍ଷା ହୋଇଛି ।

ବଳରାମ ଭ୍ରାତାଙ୍କ ସକାଶେ ଆଗରୁ ଅନେକ ଯୁଦ୍ଧ କରି ଅନେକ ରାଜ୍ୟ ଜିଣିଥିଲେ । ପରେ ନିଜ ଜୀବନ ତୁଚ୍ଛ କରି ପାଟଣା ବଂଶ ଓ ରାଣୀଙ୍କ ଜୀବନ ରକ୍ଷା କଲେ । କୃତୋପକାର ସ୍ମରଣ କରି ରାଜା ଏବେ ଆବେଗରେ ବଳରାମଙ୍କୁ ପୋଟଳାଇ ପକାଇଲେ । ରାଜା ଭାଇକୁ ପଚାରିଲେ, "ତୁମକୁ କି ପୁରସ୍କାର ଦେବି ?"

ବଳରାମ କିଛି ପୁରସ୍କାର ଗ୍ରହିଲେ ନାହିଁ । ତାଙ୍କ ମାତା କହିଲେ, "ପୁଅ, ତୁ ହୁମା ପ୍ରଦେଶ ଭାଇଙ୍କୁ ମାଗ ।"

ସାରଙ୍ଗଡ଼ର ପ୍ରାଚୀନ କବି ପ୍ରହ୍ଲାଦ ଦୁବେ କହିଛନ୍ତି—

"ବୁଝୋ ଯାଇ ଆପ ନିଜ ମାତ ହିଁ ରାମ ଦେବ ଫରମାଇ,
'ହୁମା ଦେଶ' ମାଗୁଁ ସୁତ ଭ୍ରାତହିଁ ପୈହୋ ଖୁବ୍ ରଜାଇ ।
ଚିତ୍ରୋତ୍ପଳା ବହତ ଜହାଁ ନଦୀ ହୈ କୋଶଳକେ ଛୋର,
ପୂଣ୍ୟକ୍ଷେତ୍ର ସରିତାଁ ତଟ ଜାମେ ଉପଜେ କଞ୍ଚନ ହୀର ।
ମାତା ହୁକୁମମାନ ମନମୌଜେ ମାଁଗେ ଦେବ ବଳରାମା ।
'ହୁମା ଦେଶ' ଦିଜଏ ରାଜନ୍, ମେରେ ତହିଁ କାମା ।"

ସେତେବେଳ ସମ୍ବଲପୁର ନଗର ନଥିଲା । ବଳରାମ ମାତାଙ୍କ ଆଦେଶ ଅନୁସାରେ ଭାଇଙ୍କଠାରୁ ହୁମା ପ୍ରଦେଶ ଭାଗ ପାଇଲେ । ଅଙ୍ଗ ଓ ମହାନଦୀ ମଧ୍ୟବର୍ତ୍ତୀ ହୁମା ପ୍ରଦେଶରେ ଭବିଷ୍ୟତ ସମ୍ବଲପୁର ରାଜ୍ୟର ମୂଳ ପୋତି ହେଲା । ବଳରାମ ଆଧୁନିକ ଚଉଁରପୁର ଗ୍ରାମରେ ନିଜ ଆସ୍ଥାନ ପ୍ରତିଷ୍ଠା କଲେ ।

ବଳରାମ ଦେବ ମୃଗୟାପ୍ରିୟ ଥିଲେ । ଥରେ ସେ ମୃଗୟା କରୁଥିବା ବେଳେ ତାଙ୍କ କୁକୁର ଏକ ଶଶାର ଅନୁଧାବନ କଲା । କିଛିଦୂର ଯିବା ପରେ ଶଶାଟି କୁକୁରକୁ ଆକ୍ରମଣ କଲା । ବଳରାମ ବିସ୍ମିତ ହେଲେ ।

ରାତିରେ ଦେବୀ ସୋମଲେଶ୍ୱରୀ ବଳରାମଙ୍କ ଆଗରେ ସ୍ୱପ୍ନରେ ଉଭା ହେଲେ । ଦେବୀ କହିଲେ, "ବତ୍ସ ! ମୋ ନାମ ସୋମଲାଇ, ମୁଁ ଗୁମଦହରେ ରହେ । ଏଠା ମୋର ଭାରି ପ୍ରିୟ । ଯେଉଁଠାରେ ଶଶା ତୋ କୁକୁରକୁ ଆକ୍ରମଣ କଲା, ସେହିଠାରେ ଏକ ଶିମିଳି ଗଛ ଅଛି । ସେହିଠାରେ ତୁ ମୋ'ଲାଗି ଏକ ମନ୍ଦିର ନିର୍ମାଣ କର ।"

ବଳରାମ ଦେବ ସେହି ଶିମିଳି ଗଛଠାରେ ସୋମଲାଇ ମନ୍ଦିର ନିର୍ମାଣ କଲେ । ସେଠାରେ ଏକ ଦୁର୍ଗ ନିର୍ମାଣ କଲେ । ଦୁର୍ଗ ନିକଟରେ ତାଙ୍କ ଲୋକେ ବାସ କଲେ । ସମ୍ବଲପୁର ନଗର ସ୍ଥାପିତ ହେଲା ।

ବଳରାମ ଦେବ ଯେଉଁଠାରେ ସମ୍ବଲପୁର ଦୁର୍ଗ ସ୍ଥାପନ କଲେ, ତାହା ପାଟଣା ରାଜ୍ୟର ସୀମା ବାହାରେ ଏବଂ ରତନପୁର ଅନ୍ତର୍ଗତ ସୁରଗୁଜା ରାଜ୍ୟର ସୀମା ମଧ୍ୟରେ ଥିଲା । ତେଣୁ ସୁରଗୁଜା ରାଜା ସମ୍ବଲପୁର ଆକ୍ରମଣ କଲେ ।

ବଳରାମ ସୁରଗୁଜା ରାଜାଙ୍କୁ ପ୍ରତ୍ୟାକ୍ରମଣ କରି ଭେଡ଼ନ ନଦୀକୂଳରେ ତାଙ୍କର ସମ୍ମୁଖୀନ ହେଲେ । ଯୁଦ୍ଧରେ ସୁରଗୁଜା ରାଜା ପରାସ୍ତ ହୋଇ ତାଙ୍କ ସଙ୍ଗେ ସନ୍ଧି କଲେ । ସନ୍ଧିରେ ସୁରଗୁଜା ରାଜା ବଳରାମଙ୍କ ହସ୍ତରେ ନିଜ କନ୍ୟାଙ୍କୁ ଏବଂ ରାୟଗଡ଼, ବରଗଡ଼, ସାରଙ୍ଗଗଡ଼ ଓ ଶକ୍ତି ସମର୍ପଣ କଲେ । ବଳରାମ ତାଙ୍କଠାରୁ ପାଇଥିବା "ଅନନ୍ତଶଯ୍ୟା" ମୂର୍ତ୍ତି ଓ ଅନେକ ଯୁଦ୍ଧୋପକରଣ ନେଇ ସମ୍ବଲପୁର ଦୁର୍ଗକୁ ଫେରିଲେ । ଅନନ୍ତଶଯ୍ୟା ସମ୍ବଲପୁର ଦୁର୍ଗ ମଧ୍ୟରେ ସ୍ଥାପିତ ହେଲେ ।

ସୁରଗୁଜା ଯୁଦ୍ଧ ପରେ ବଳରାମ ଏକାଦିକ୍ରମେ ବାମଣ୍ଡା, ଗାଙ୍ଗପୁର ଓ ବଣାଇ ଆକ୍ରମଣ କରି ସେଗୁଡ଼ିକୁ ସାମନ୍ତ ରାଜ୍ୟରେ ପରିଣତ କଲେ ।

ପାଟଣାର ରାଜା ନରସିଂହ ଦେବଙ୍କ ପରେ ତାଙ୍କ ପୁତ୍ର ହଂଷିର ଦେବ ସିଂହାସନରେ ବସିଲେ । ତିନି ବର୍ଷ ପରେ ତାଙ୍କର ମୃତ୍ୟୁ ଘଟିଲା । ହଂଷିରଙ୍କ ସାତ ମାସର ପୁତ୍ରଙ୍କୁ ସିଂହାସନରେ ବସାଇ ବଳରାମ ଦେବ ଶିଶୁ ପକ୍ଷରୁ ରାଜମାତାଙ୍କୁ ଅଭିଭାବକ ରୂପେ ରଖାଇଲେ । ନନ୍ଦପୁରର ରାଜକନ୍ୟା ଏହି ରାଜମାତା ଲୋକଙ୍କ କୁବୁଦ୍ଧିରେ ରାଜ୍ୟ ଛାଡ଼ି ସପୁତ୍ର ନନ୍ଦପୁରକୁ ପ୍ରସ୍ଥାନ କଲେ । ବଳରାମ ଦେବ ନିଜ ପୁତ୍ର ହୃଦୟନାରାୟଣ ଦେବଙ୍କୁ ପାଟଣାର ଶାସନକର୍ତ୍ତା ନିଯୁକ୍ତ କଲେ । ଏହିପରି ପାଟଣା ଉପରେ ସମ୍ବଲପୁରର ଅଧିନାୟକତ୍ୱର ସୂତ୍ରପାତ ହେଲା ।

ସେତେବେଳେ ଆଧୁନିକ ପାଟଣା, ସୋନପୁର ଓ ଖଡ଼ିଆଳ ନେଇ ପାଟଣା ରାଜ୍ୟ ଗଠନ ହୋଇଥିଲା । ବୋଡ଼ାସମ୍ବର, ରେଢ଼ାଖୋଲ, ଆଠମଲ୍ଲିକ, ଫୁଲଝର, ନନ୍ଦପୁର ଓ ବସ୍ତର ପାଟଣାର ସାମନ୍ତରାଜ୍ୟ ଥିଲା ।

ମୃତ୍ୟୁ ପୂର୍ବରୁ ବଳରାମ ଦେବ ଏହିପରି ଏକ ବିଶାଳ ସମ୍ବଲପୁର ରାଜ୍ୟ ଗଠନ କରିଗଲେ ।

( ୮ )

## ବଳଭଦ୍ର ଦେବ

ସମ୍ବଲପୁରର ଚତୁର୍ଥ ଚୌହାଣ ରାଜା ବଳଭଦ୍ର ଦେବ ୧୫୭୧ରୁ ୧୫୯୧ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ସେ ସମ୍ବଲପୁର ଦୁର୍ଗକୁ ସୁଦୃଢ଼ କରିବା ନିମନ୍ତେ ନୂଆ ଛାଞ୍ଚରେ ତାହାକୁ ନିର୍ମାଣ କଲେ । ଦୁର୍ଗ ମଧ୍ୟରେ ନିଜ ସକାଶେ 'ରଙ୍ଗମହଲ୍' ନାମରେ ଏକ ପ୍ରାସାଦ ତୋଳାଇଥିଲେ ।

ଦୁର୍ଗର ଦକ୍ଷିଣରେ ମହାନଦୀ ଥିଲା । ମୁହାଣ ଦରଜାଠାରୁ ସମଲାଇଘାଟ ପର୍ଯ୍ୟନ୍ତ ମହାନଦୀର କୂଳେ କୂଳେ ବଳଭଦ୍ର ଦେବ ୨୪୪୩ ଫୁଟ ଦୀର୍ଘ ଏକ ଦୃଢ ପ୍ରସ୍ତର କାନ୍ଥ ନିର୍ମାଣ କଲେ । କାନ୍ଥଟି ଚାରି ହାତ ପ୍ରସ୍ଥବିଶିଷ୍ଟ ଥିଲା । କାନ୍ଥର ସ୍ଥାନେ ସ୍ଥାନେ କେତେଗୁଡ଼ିଏ ବୁରୁଜ ନିର୍ମାଣ କରି ତହିଁରେ ତୋପ ରଖିବାର ବନ୍ଦୋବସ୍ତ କଲେ । ତୋପ ଚଳାଇବା ନିମନ୍ତେ ବୁରୁଜମାନଙ୍କରେ ଫାଙ୍କର ବ୍ୟବସ୍ଥା ଥିଲା । ବୁରୁଜଗୁଡ଼ିକର ପରିଧି ଫୁଟ ଓ ଉଚ୍ଚତା ୧୭ ଫୁଟ ଥିଲା ।

ଦୁର୍ଗର ପୂର୍ବ, ଉତ୍ତର ଓ ପଶ୍ଚିମରେ ଏକ ଖାଇ ଥିଲା । ଚଟନବଣ ଘାଟ ଓ ସୋମଲାଇ ଘାଟଠାରେ ମହାନଦୀର ବନ୍ୟା ଜଳ ଖାଇରେ ପ୍ରବେଶ କରିବାକୁ ସୁବିଧା କରା ଯାଇଥିଲା । ଖାଇର ଅତିରିକ୍ତ ଜଳ ନିଷ୍କାସନ ନିମନ୍ତେ ଉଦ୍‌ବୃତ୍ତ ଜଳକୁ ମୁହାଣ ଦରଜା ବାଟେ ମହାନଦୀରେ ପକାଇ ଦିଆ ଯାଉଥିଲା । ଖାଇର ଭିତରେ ପାଖେ କଣ୍ଟାବାଉଁଶ ବୁଦା ଘନଭାବରେ ଲଗା ଯାଇଥିଲା, ଯେପରି ଶତ୍ରୁ ଦୁର୍ଗ ମଧ୍ୟକୁ ପ୍ରବେଶ କରି ପାରିବ ନାହିଁ ।

ଦୁର୍ଗରୁ ମହାନଦୀକୁ ଓହ୍ଲାଇବା ପାଇଁ ଛଅ ଗୋଟି ଦରଜା ବା ଫାଟକ ଥିଲା । ମୁହାଣ ଦରଜା, ସୋନପୁର ଘାଟ, ସମଲାଇ ଘାଟ, ରାଜଘାଟ, ଜଳେଶ୍ୱର ଘାଟ ଓ ଜଟିଆ ପିପ୍‌ପଳ ଦରଜା ।

ବଳଭଦ୍ର ଦେବ ସମ୍ବଲପୁରରେ ବ୍ରହ୍ମପୁର ମନ୍ଦିର ନିର୍ମାଣ କରି ସେଠାରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ସ୍ଥାପନ କରିଥିଲେ । ମନ୍ଦିରର ସେବାବିଧି ନିମନ୍ତେ ଗ୍ରାମମାନ ବୃତ୍ତି ରୂପେ ଖଞ୍ଜି ଦେଇଥିଲେ ।

ବଳଭଦ୍ର ଜଣେ ପ୍ରତାପୀ ରାଜା ଥିଲେ ଏବଂ ବୌଦ ରାଜ୍ୟ ବିରୋଧରେ ଏକ ଅଭିଯାନ କରିଥିଲେ । ଏଥି ନିମନ୍ତେ ସେ ଏକ ବିଶାଳ ସେନାର ଆୟୋଜନ କଲେ ।

ବୌଦଦୁର୍ଗ ବଳରେ ଊଣା ନ ଥିଲା । ବଳଭଦ୍ର ବାର ବର୍ଷ ପର୍ଯ୍ୟନ୍ତ ଦୁର୍ଗ ଅବରୋଧ କରି ସୁଦ୍ଧା ଅଧିକାର କରି ପାରିଲେ ନାହିଁ ।

ସାରଙ୍ଗଗଡ଼ର ପ୍ରାଚୀନ କବି ପ୍ରହ୍ଲାଦ ଦୁବେ ନିଜ ରଚନା 'ଜୟଚନ୍ଦ୍ରିକା' କାବ୍ୟରେ କହିଛନ୍ତି—

ଚତୁରଙ୍ଗ ସେନା ସାଜ କହେଁ । ବୌଦ ଚଢ଼ନ ଯାଇକେ ।
ନହିଁ ଟୁଟେ କିଲ୍ଲା ବୌଦ ରହିଗେ ବର୍ଷ ବାରହ ଛାଇକେ ।।

ବଳଭଦ୍ର ନିଜ ଅଧୀନ ସତର ଗଡ଼ଜାତ ରାଜ୍ୟର ସାମନ୍ତ ସେନା ନେଇ ସେଠାରେ ଠୁଳ କଲେ । ତଥାପି ବୌଦ କିଲ୍ଲାର ଧ୍ୱଂସ ହେଲା ନାହିଁ କିମ୍ବା ରାଜା ଆତ୍ମସମର୍ପଣ କଲେ ନାହିଁ ।

ବଳଭଦ୍ରଙ୍କ ସୈନିକମାନେ ନିଜ ଶିବିରରେ ଆମ୍ବଗଛମାନ ରୋପିଥିଲେ । ସେହି ଗଛମାନ ବଢି ବୋଡ଼ା ହୋଇଗଲା । ସୈନିକମାନେ ତହିଁର ଫଳ ମଧ୍ୟ ଖାଇଲେ; ତଥାପି ଅବରୋଧର ଫଳ ପାଇ-ପାରିଲେ ନାହିଁ ।

ବଳଭଦ୍ର ଭୀଷଣ ପରାକ୍ରମ ଦେଖାଇଲେ । ତାଙ୍କ ପ୍ରତିଜ୍ଞା ଓ ପରାକ୍ରମ ଦେଖି ଗୃହରକ୍ଷୀଦଳ ଭୟରେ ଥରହର ହେଲେ । ତଥାପି ରାଜା ଦୁର୍ଗ ମଧ୍ୟରୁ ବହିର୍ଗତ ହେଲେ ନାହିଁ କିମ୍ବା ବଳଭଦ୍ରଙ୍କ ସୈନ୍ୟମାନେ ଦୁର୍ଗ ଭିତରେ ପଶି ପାରିଲେ ନାହିଁ ।

ବଳଭଦ୍ର ଶେଷରେ ସାରଙ୍ଗଗଡ଼ର ସାମନ୍ତ ରାଜା ଭିଖରାୟଙ୍କୁ ସେନାପତି ହେବା ନିମନ୍ତେ ଡକାଇଲେ । ସେତେବେଳେ ଭିଖରାୟ ମଧ୍ୟ-ପ୍ରଦେଶସ୍ଥ ଦୁର୍ଗ ଜିଲ୍ଲାରେ ତାଙ୍କ ଶ୍ୱଶୁର ଘର ଗାଁ ଧମଧାରେ ରହୁଥିଲେ । ଭିଖରାୟ ଶ୍ୱଶୁରଙ୍କଠାରୁ ଏକ ହଜାର ସୈନ୍ୟ ଘେନି ବୌଦ ଅଭିଯାନରେ ଯୋଗ ଦେଲେ ।

ଭିଖରାୟ ବଳପୂର୍ବକ ଦୁର୍ଗ ମଧ୍ୟରେ ପ୍ରବେଶ କଲେ । ସୈନ୍ୟମାନେ ଦୁର୍ଗ ମଧ୍ୟକୁ ଝସାଇ ପଶିଲେ । ବୌଦର ରାଜା ସିଦ୍ଧଭଞ୍ଜ ଆତ୍ମସମର୍ପଣ କଲେ ।

ବଳଭଦ୍ରଙ୍କ ମନ ଆନନ୍ଦର ସୀମା ମାନିଲା ନାହିଁ । ଯେଉଁ ସିଦ୍ଧଭଞ୍ଜ ତାଙ୍କ ଅବରୋଧକୁ ବାର ବର୍ଷ କାଳ ପ୍ରତିରୋଧ କରିଥିଲେ, ବଳଭଦ୍ର ତାଙ୍କୁ ବିଶେଷ ସମ୍ମାନ ଦେଖାଇଲେ । ବୌଦ ତାଙ୍କର କରଦ ରାଜ୍ୟରେ ପରିଣତ ହେଲା । ସିଦ୍ଧଭଞ୍ଜ ବୌଦର ସାମନ୍ତ ରାଜା ରୂପେ ଅବସ୍ଥାପିତ ହେଲେ ।

ବଳଭଦ୍ର ଭିଖରାୟଙ୍କୁ ନିଜ ପ୍ରଧାନ ଅମାତ୍ୟ ପଦରେ ନିଯୁକ୍ତ କଲେ । ସେ ନିଜ ରାଜଧାନୀକୁ ପ୍ରତ୍ୟାବର୍ତ୍ତନ କଲେ ।

ବଳଭଦ୍ର ଚନ୍ଦ୍ରପୁର ଓ ଝାଡ଼ଖଣ୍ଡରେ ମଧ୍ୟ ନିଜ ଅବସ୍ଥାନ ନିମନ୍ତେ ଦୁଇଟି ଗଡ଼ ନିର୍ମାଣ କରିଥିଲେ ।

ବୌଦ ଅଭିଯାନ ପରେ ସମ୍ବଲପୁରର ଅଠରଗଡ଼ର ତାଲିକା ପୂର୍ଣ୍ଣ ହୋଇଥିଲା; କାରଣ ତହିଁ ପୂର୍ବରୁ ପାଟଣା ମଧ୍ୟ ସମ୍ବଲପୁରର ସାମନ୍ତ ରାଜ୍ୟରେ ପରିଣତ ହୋଇଥିଲା ।

ସମ୍ବଲପୁର ଅଠର ଗଡ଼ଜାତର ତାଲକା ନମ୍ନମତେ ଥିଲ—

ପାଟଣା, ଖଡ଼ଆଳ, ସୋନପୁର, ବସ୍ତର, ନନ୍ଦପୁର, ବୋଡ଼ାସମ୍ବର, ଫୁଲଝର, ହାରଙ୍ଗଗଡ଼, ବରଗଡ଼, ଗସ୍ପଗଡ଼, ଶକ୍ତି, ଗାଙ୍ଗପୁର, ବଣାଇ, ବାମଣ୍ଡା, ରେଢ଼ାଖୋଲ, ଆଠମଲ୍ଲିକ, ବୌଦ୍ଧ ଓ ସୁରଗୁଜା ।

—ସମାପ୍ତ—

